

ବାବାଜୀ ଶ୍ରୀ ବୈଷ୍ଣବଚରଣ ଦାସ

# ମୁଖବନ୍ଧ



ନନ୍ଦ-ହୃଦୟାନନ୍ଦ ବ୍ରଜକୁଳଚନ୍ଦ୍ର ଶ୍ରୀକୃଷ୍ଣଙ୍କ ଲୀଳାକୁ ଯଥା ତଥା ସର୍ବ ସାଧାରଣରେ ପ୍ରଚାର କରିବା ମହାକଠିନ ବ୍ୟାପାର । କୃଷ୍ଣ ବୋଲି ଯେଉଁ ଜଣକ, ସେ ସହଜ ଜଣେ ନୁହେଁ—ଗୋଟିଏ କାଳିଆନାଗ, ଏ କାଳିଆ ନାଗ ଏମିତି ସେମିତି ନାଗ ନୁହେଁ, ଯେ କି କାଳନ୍ଦୀ ହ୍ରଦରେ ପଶି ମହାଦୁଷ୍ଟ ମହାବିଷଧର କାଳୀୟ ନାଗର ମହାଗର୍ବକୁ ଦଳଦେଇ ମହାଆନନ୍ଦରେ ମହାନୃତ୍ୟ କରି ଗୋପ ଗୋପୀମାନଙ୍କୁ ମହାସଙ୍କଟରୁ ରକ୍ଷା କରିଥିଲେ । ଏ ସେହି କାଳିଆନାଗଟି ! ସାବଧାନ ! ଏ ସାପକୁ ଯେ ଖେଳାଇବ, ସେ ଜଣେ ଭଲ (ଜାଙ୍ଗଳିକ) ସାପୁଆକେଳା ହେବା ଦରକାର । ଏ ନାଗ କେବଳ ହୃଦୟ ପେଡିରେ ରହି ବଡ଼ ବିଚିତ୍ର ଖେଳ ଖେଳେ । ଏଥିକି ଗଦ, ପଦ, ଗାରୁଡ଼ି ଆଉ ଧୂଳି ମଧ୍ୟ ଲୋଡ଼ା, ( ଗଦ—ତୁଳସୀମାଳା, ତିଳକ; ପଦ—କୃଷ୍ଣ ମନ୍ତ୍ର; ଧୂଳି—ଶ୍ରୀଗୁରୁ ବୈଷ୍ଣବଙ୍କ ପଦରଜ, ଗାରୁଡ଼ୀ—ନାମମନ୍ତ୍ର ) ସାପୁଆମାନେ ଡ଼ମ୍ବରୁ ନାଗେଶ୍ୱର ବଜାଇ ସାପକୁ ହୁଙ୍କାରୁ ବା ଗାତରୁ ବାହାର କରାଇ ନିଜ ପେଡ଼ିରେ ରଖନ୍ତି, ଭକ୍ତରୂପ ସାପୁଆ ଖୋଳ କରତାଳ ସ୍ୱରୂପ ଡମ୍ବରୁ ନାଗେଶ୍ୱର ବଜାଇ ନାମ ସଙ୍କୀର୍ତ୍ତନ ସ୍ୱରୂପ ପଦ ବୋଲା ଗାଇବା ମାତ୍ରେ ତତ୍‌କ୍ଷଣାତ୍ କାଳିଆନାଗ ତା'ର ନାଗୁଣୀ ସହିତ ବୃନ୍ଦାବନ ନାଟ୍ୟସ୍ଥଳ ହୁଙ୍କାରୁ ଆନନ୍ଦରେ ଫଣା ଟେକି ଖେଳି ଖେଳି ଆସି ସାପୁଆ ପାଖେ ପହଞ୍ଚି ଯାଏ, କିନ୍ତୁ ସାପୁଆର ଦମ୍ଭ ସାହାସ ଚାହିଁ, ନଚେତ୍ ଟିକିଏ ସତର୍କ ନୋହିଲେ ଏ ନାଗ ଫଣା କରି ଦଂଶିଦେବ । ଏଣୁ ଅନୁରୋଧ କରୁଅଛୁ କି, ଯେଉଁମାନେ ବିଷ ମନ୍ତ୍ର ଜାଣି ନ ଥିବେ, ସେମାନେ ଏ ସାପ

ଗାତରେ ହାତ ପୂରାଇବେ ନାହିଁ; ଝମ୍ପା ଖେଳାଇବାକୁ ସାହସୀ ହେବେ ନାହିଁ । ପ୍ରଥମେ ହୃଦୟ ଭିତରୁ ଅଳିଅ କାଢ଼ି ସଫା କରିବେ । କୂଟ-କପଟ, ଅହଙ୍କାର, ଗର୍ବ, ହିଂସା, କାମ, କ୍ରୋଧ, ଲୋଭ, ମୋହ ଏହିପରି ନାନା ଅଳିଅ ପୋଛି ପାଛି ପେଡ଼ିକ ପ୍ରେମ-ଜଳରେ ଧୋଇ ଭକ୍ତି ଡ଼ୋର ଲଗାଇ ଥିବେ । ନ ହେଲେ ଏ ସୁକୁମାରଥ ସାପ ଦଂଶି ଖସି ଚାଲିଯିବ । ପବନ ଭାବରେ ନ ରହିଲେ ଏ ସାପ ନିଶ୍ଚୟ ଦଂଶିବ ହିଁ ଦଂଶିବ ।

ଅଷ୍ଟକାଳୀନ ରାସଲୀଳା ଅଭିନୟ କରିବାକୁ କେତେକ ବ୍ୟକ୍ତି ସାହସୀ ହେଉଥିଛନ୍ତି, କିନ୍ତୁ ଏହି ଅପ୍ରକଟ ଲୀଳାକୁ ପ୍ରକଟ କରିବା ମହାଦୁଃସାଧ୍ୟ । ଏହା ଗୁଡ଼ମୂର୍ଖ ନୁହେ—ସେହି କାଳିଅ ନାଗର ମହାଗରଳ । ଯୁଗଲ ମହାମନ୍ତ୍ରରେ ଦୀକ୍ଷିତ ହୋଇ ସଦ୍‌ଗୁରୁ ଉପଦେଶକ୍ରମେ ପ୍ରଧାନ ଗୁଣୀଅ ହେବା ପର୍ଯ୍ୟନ୍ତ ଏଥିରେ ପଥିକ ହୋଇ ପାରିବେ ନାହିଁ । କେହି କେହି ଏହାକୁ ବାଜେ ଲୀଳା ଯାତ୍ରା ବା ନୃତ୍ୟାଙ୍ଗପର ଜ୍ଞାନ କରନ୍ତି, କେହି କେହି ବା ଥିଷ୍ଟା ତାମସାରେ ସର୍କସ, ଥିଏଟର ନ୍ୟାୟ ଏ ଅପ୍ରାକୃତ ଲୀଳାକୁ ପ୍ରାକୃତ ମନେ କରି ନାନାଦି କୁକ୍ରିୟା ଆଚରଣରେ ନିମଗ୍ନ ହୋଇ ଥାଆନ୍ତି, ଏଣୁ ପ୍ରାର୍ଥନା ପୂର୍ବକ ଜଣାଉଅଛି କି ଯେଉଁମାନେ ଶ୍ରୀ ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁଙ୍କ ମନ୍ତ୍ର ଓ ତତ୍ତ୍ୱ ଉପଦେଶ ଗ୍ରହଣ କରି ନ ଥିବେ, ଯେଉଁମାନେ ଶ୍ରୀହରି ମନ୍ଦିର ଅଙ୍କିତ ଦ୍ୱାଦଶ ତିଳକ ନାମାବଳୀରେ ଦ୍ୱାଦଶାଙ୍ଗ ଭୂଷିତ ହୋଇ ନ ଥିବେ, ଯେଉଁମାନେ ଗୁରୁ କୃଷ୍ଣ ବୈଷ୍ଣବଙ୍କ ପ୍ରତି ଦୃଢ଼ବିଶ୍ୱାସ ଓ ଏକାନ୍ତ ନିଷ୍ଠା ଭକ୍ତି ରଖି ନ ଥିବେ, ଯେଉଁମାନେ ଅପ୍ରାକୃତ ପ୍ରେମମଦରେ ଭୋଳ ନ ହୋଇ ପ୍ରାକୃତ ମଦ୍ୟ ମାଂସରେ ଆଶକ୍ତ ଥିବେ, ଯେଉଁମାନେ ସାଧନ ପ୍ରଣାଳୀରେ ଅନୁଭବ ନ ଥିବେ, ଯେଉଁମାନେ ପାରମାର୍ଥିକ ତତ୍ତ୍ୱ ବୁଝି ନ ଥିବେ, ଯେଉଁମାନେ ପ୍ରାଚୀନ ମହାଜନ ଓ ଗୋସ୍ୱାମୀମାନଙ୍କ ମୁଖନିଃସୃତ ଭକ୍ତିଗ୍ରନ୍ଥସମୂହ ଅଧ୍ୟୟନ କରି ନ ଥିବେ, ସେମାନେ ଏ ନିଗୂଢ଼ ଲୀଳା ଶ୍ରୀ ଶ୍ରୀ ରାଧାଗୋବିନ୍ଦଙ୍କ ତନ୍ମୟ-ରସରେ ଅଧିକାରୀ ହୋଇ ପାରିବେ ନାହିଁ । ଏଣୁ ବାରମ୍ବାର କରଯୋଡ଼ି ବିନୟ ପୂର୍ବକ ଜଣାଉଅଛି କି

ଗୋପୀଭାବାଶ୍ରୟ ଗ୍ରହଣ କରି ନ ଥିବା ବ୍ୟକ୍ତିମାନେ ସାବଧାନ ! ସାବଧାନ !! ସାବଧାନ ! ! ! କାରଣ:—ଏହି ରାଧାକୃଷ୍ଣ ପ୍ରେମ ଔଷଧରେ ବିଷ ଅଛି ଅମୃତ ଏକତ୍ରିତ ହୋଇଅଛି, ବିଷ ମାରଣ କରି ନ ଜାଣିଲେ ଏ ମହୌଷଧ ପାନ କରିବା ବଡ କଠିନ । ଏହି ବିଷ ମାରଣ କରିବାକୁ ତିନିଜଣ ବୈଦ୍ୟଙ୍କର ଆଶ୍ରୟ ନେବାକୁ ହେବ ।

ପ୍ରଥମ ବୈଦ୍ୟ—ଶ୍ରୀଶ୍ରୀଗୁରୁଦେବ ଗୋସ୍ୱାମୀ ।
ଦ୍ୱିତୀୟ ବୈଦ୍ୟ—ଶ୍ରୀଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁ ।
ତୃତୀୟ ବୈଦ୍ୟ—ଶ୍ରୀଶ୍ରୀବୈଷ୍ଣବ ଗୋସାଇଁ ।

ଏହି ତିନିଜଣ ବୈଦ୍ୟଙ୍କର ପ୍ରଧାନ ଉପଦେଶ ଓ କାମରୋଗ ଚିକିତ୍ସାର ପ୍ରକୃତ ଉପାୟ ନ ଜାଣିବା ଯାଏ ଏ ମହୌଷଧ କେହି ପାନ କରି ପାରିବେ ନାହିଁ । ଯଦି ଅମାନ୍ୟ ହୋଇ ପାନ କରିବେ, ତାହାହେଲେ ସମୟରେ ପାଗଳ ଫୁଟ ବାହାରିଲା ଭଳି ଦଶା ଭୋଗିବାକୁ ହେବ । ଏଣୁ କୃତାଞ୍ଜଳିପୁଟରେ ବିନୀତ ପ୍ରାର୍ଥନା ସହିତ ନିବେଦନ କରୁଅଛି କି ଯେଉଁମାନେ ଏ ନିଗୂଢ଼ ଅପ୍ରକଟ ଲୀଳାକୁ ଅଭିନୟ କରିବାରେ ପ୍ରବୃତ୍ତ ହେବେ, ସେମାନେ ଲୀଳାର ପ୍ରଣାଳୀକ୍ରମେ ବିଜବିଧି ଅନୁସାରେ ଏହି ଉପାସନାରେ ପ୍ରବେଶ କରିବେ, ନଚେତ୍ ପରିଣାମରେ ବିଷପାନ ଫଳ ଲାଭ କରିବାକୁ ହେବ । ଏଥିପାଇଁ ମହାକାବ୍ୟ ଗୀତଗୋବିନ୍ଦର ପଦାନୁସରଣେ ମୋର ପ୍ରମାତାମହ ବସନ୍ତରାସ ପଦକର୍ତ୍ତା ୬ ପିଣ୍ଡିକ ଶ୍ରୀଚନ୍ଦନ ବାରମ୍ବାର ବୁଝାଇ କହିଅଛନ୍ତି, ଯଥା :—

"ଅଜ୍ଞାନ ପ୍ରେମସାଗର ଜୟୋଦଶ ଗ୍ରନ୍ଥ
କୀର୍ତ୍ତନ କରି ଓହେ ନିଃପୁଂଲିଙ୍ଗ ଭକ୍ତବୃନ୍ଦ ।"

ଏବଂ ବିଦଗ୍ଧ-ଚିନ୍ତାମଣି ପ୍ରଣେତା ୬ଅଭିମନ୍ୟୁ ସାମନ୍ତସିଂହାର ମଙ୍ଗଳାଚରଣରେ ଲେଖିଅଛନ୍ତି; ଯଥା :—

ଝୁଲ ମାର୍ଗ ପଇବେ ପଥିକେ ହେଲେ ଭ୍ରମି ।
ଝଗଡ଼ ବାଟେ ପଶିଲେ ମୂର୍ଖେ ହେବେ ଦ୍ରୁମି ହେ ॥

\+ \+ \+ \+ \+

ଏହିପରି ୰ଗୋପାଳକୃଷ୍ଣ, ଦୀନକୃଷ୍ଣ, ବନମାଳୀ, କବିସୂର୍ଯ୍ୟ ବ୍ରହ୍ମା ପ୍ରଭୃତି ଭକ୍ତ କବିମାନେ ସଖୀଭାବକୁ ଆଶ୍ରୟ କରି ନିଜ ନିଜ ପଦ୍ୟାବଳୀ-ମାନଙ୍କରେ ଉକ୍ତ ବିଷୟ ଉଲ୍ଲେଖ କରି ଅଛନ୍ତି । ଏ ଅଧମ ମଧ୍ୟ ସେହି ମହାଜନମାନଙ୍କ ଭାବପୂର୍ଣ୍ଣ ସଙ୍ଗୀତ ସମୂହରୁ କେତେକ ଗୀତ ଏହି ନାଟମାନଙ୍କରେ ସନ୍ନିବେଶିତ କରିଅଛୁ । ଅଖ୍ୟାକରେ ସହୃଦୟ ପ୍ରେମିକ ଭାବୁକ ପାଠକବୃନ୍ଦଙ୍କୁ ଏ ବିଷୟ ଅବିଦିତ ହେବ ନାହିଁ ।

ପ୍ରକାଶ ଥାଉକି ମତ୍‌ପ୍ରଣୀତ ନାଟକମାନ ଯେଉଁମାନେ କୌଣସି ସ୍ଥଳରେ ଅଭିନୟ କରିବାକୁ ଇଚ୍ଛା କରିବେ, ସେମାନେ ସିଦ୍ଧ ପ୍ରଣାଳୀ ଅନୁଯାୟୀ ଏ ଅପ୍ରକଟ ଲୀଳାକୁ ପ୍ରକାଶ କରିବେ । ନଚେତ୍ ରାସଲୀଳା ନାଟକାଭିନୟର ଛପା ନିୟମାବଳୀ ଆମ୍ଭ ନିକଟରୁ କିମ୍ବା ଶ୍ରୀଧାମ ବୃନ୍ଦାବନ ସିଦ୍ଧାଶ୍ରମ ଗୋସ୍ୱାମୀଙ୍କ ନିକଟରୁ ମଗାଇ ନେଇ ପାରନ୍ତି । ଇତି ।

ସତ୍ୟବାଦୀ ରାସଲୀଳା ମଣ୍ଡଳୀ
ପୋଃ ଅଃ ସାକ୍ଷୀଗୋପାଳ
। ଜି । ପୁରୀ ।

ବ୍ରଜବାସୀ
ବାବାଜୀ ଶ୍ରୀ ବୈଷ୍ଣବଚରଣ ଦାସ
ତା ୧୦ । ୧୧ । ୨୨ ମସିହା

# ମାନଭଞ୍ଜନ

## ନାଟକର ସାରମର୍ମ



ଶ୍ରୀକୃଷ୍ଣ ଯେପରି ଶ୍ରୀରାଧାଙ୍କର ବଶୀଭୂତ, ସେପରି ଅନ୍ୟ କାହାରି ନୁହନ୍ତି; ଏହା ହିଁ ଫଳିତାର୍ଥ । ରୂପରେ, ଗୁଣରେ ଓ ସୌଭାଗ୍ୟରେ ଯଦି ଶ୍ରୀରାଧା ସର୍ବାଧିକା, ତେବେ କାହିଁକି ଶ୍ରୀକୃଷ୍ଣ ଧନ୍ୟାଧନ୍ୟା ଚନ୍ଦ୍ରାବଳୀ ଆଦି ଅନ୍ୟାନ୍ୟ ଗୋପୀମାନଙ୍କ ସଙ୍ଗେ ବିହାର କରନ୍ତି ? ଏହି ଆଶଙ୍କାରେ ଶ୍ରୀକୃଷ୍ଣ କହୁଛନ୍ତି—ତ୍ରୈଲୋକ୍ୟ ମଧ୍ୟରେ ପୃଥିବୀ ଧନ୍ୟ—ଯେଉଁ ପୃଥିବୀରେ ମୋର ବୃନ୍ଦାବନ ପୁରୀ, ସେହି ବୃନ୍ଦାବନରେ ଗୋପୀକାମାନେ ଧନ୍ୟା—ଯେଉଁ ଗୋପୀମାନଙ୍କ ମଧ୍ୟରେ ମୋର ରାଧା ନାମେ ବଲ୍ଲଭୀ ଅଛି । ଏହି ମାନଭଞ୍ଜନ ନାଟକ ଖଣ୍ଡିକ ଯେଉଁ ମହାକାବ୍ୟ ଗୀତଗୋବିନ୍ଦ ନାମକ ଗ୍ରନ୍ଥର ଛାୟା ଅବଲମ୍ବନେ ବସନ୍ତରାସର ଆଶ୍ରୟ ଗ୍ରହଣ କରିଅଛି, ସେହି ମହାକାବ୍ୟ ତୃତୀୟ ସର୍ଗ ପ୍ରଥମ ଶ୍ଳୋକରେ କବିରାଜ ୰ଜୟଦେବ ଗୋସ୍ୱାମୀ କହିଅଛନ୍ତି । ଯଥା;—

କଂସାରିରପି ସଂସାରବାସନା ବଦ୍ଧ ଶୃଙ୍ଖଲାତ୍ ।
ରାଧାମାଧାୟ ହୃଦୟେ ତତ୍ୟାଜ୍ୟ ବ୍ରଜସୁନ୍ଦରୀଂ ॥

କଂସଅରି ଶ୍ରୀକୃଷ୍ଣ ସମ୍ୟକ୍ ସାରଭୂତ ରାସଲୀଳା ବାସନାରେ ବଦ୍ଧ ଶୃଙ୍ଖଲା ଶ୍ରୀରାଧାଙ୍କୁ ହୃଦୟରେ ଧାରଣ କରି ଅନ୍ୟ ବ୍ରଜସୁନ୍ଦରୀମାନଙ୍କୁ ପରିତ୍ୟାଗ କରି ଗମନ କରି ଅଛନ୍ତି । ଏ ବିଷୟ ଏ ନାଟକର ପ୍ରଥମ ଅଙ୍କ ଯାହାକି "ବସନ୍ତ ଉତ୍ସବ ବା ଈର୍ଷାମାନ" ନାମରେ ଉଲ୍ଲେଖ ଅଛି । ପ୍ରେମିକ ରସିକ ଭକ୍ତଗଣ ତାହା ଆସ୍ୱାଦନ କରି ଚିନ୍ମୟ ସୁଖର ଅଧିକାରୀ ହୁଅନ୍ତୁ ।

ବ୍ରଜରେ ନାୟକ ଅପେକ୍ଷା ନାୟିକାଙ୍କର ରସାଧିକ୍ୟ । ବ୍ରଜ ନାୟକ ମୁକୁଟମଣି ଶ୍ରୀକୃଷ୍ଣଙ୍କ ନାୟିକା-ମୁକୁଟମଣି ଶ୍ରୀରାଧା ରାଣୀଙ୍କ ସମ୍ମିଳନରେ ଶ୍ରୀ ଦେବଙ୍କ ଏଗର ପ୍ରେମାଧିକ୍ୟ ପ୍ରକଟ ନ କରି ନାୟିକାଙ୍କ ସମରସବାଦୀ ଭକ୍ତମାନଙ୍କ ମତ ମଣ୍ଡନ କରି ଅଛନ୍ତି । ( ଭକ୍ତିମୂଳ ରସଶାସ୍ତ୍ରର ଆଦେଶରୁ )

ଶ୍ରୀରାଧାଙ୍କର ପଞ୍ଚସ୍ପୃହା କପରି ହୋଇଥିଲା, ଶ୍ରବଣ କରନ୍ତୁ,—

୧ମ ଜିହ୍ୱା, ୨ୟ ନାସିକା, ୩ୟ କର୍ଣ୍ଣ, ୪ର୍ଥ ତ୍ୱକ୍, ୫ମ ଚକ୍ଷୁ । ( ଏହି ପଞ୍ଚଇନ୍ଦ୍ରିୟଙ୍କ ସ୍ପୃହା କୁହାଗଲା । ) ଶ୍ରୀରାଧାଙ୍କ ନୟନଯୁଗଳ ଶ୍ରୀକୃଷ୍ଣଙ୍କରୂପରେ ଲୁବ୍ଧ, ତ୍ୱକ୍ ଶ୍ରୀକୃଷ୍ଣଙ୍କ ଅଙ୍ଗ ସ୍ପର୍ଶ ପାଇଁ ପୁଲକିତ, କର୍ଣ୍ଣ ଶ୍ରୀକୃଷ୍ଣଙ୍କ ବାକ୍ୟ ଓ ବଂଶୀସ୍ୱନରେ ଉତ୍କଣ୍ଠିତ, ନାସାପୁଟ ଶ୍ରୀକୃଷ୍ଣଙ୍କ ଅଙ୍ଗ ସୌରଭରେ ପ୍ରଫୁଲ୍ଲିତ, ଆଉ ଶ୍ରୀକୃଷ୍ଣଙ୍କ ଅଧରପୁଟରେ ଜିହ୍ୱା ଅନୁରାଗିଣୀ, ଏତାଦୃଶ ଅବସ୍ଥାରେ ବିରହିଣୀ ଶ୍ରୀରାଧା କପଟତା ପୂର୍ବକ ମହାଧୈର୍ଯ୍ୟ ଅବଲମ୍ବନ କରି ଅଧୋବଦନରେ ରହିଲେ ମଧ୍ୟ ବାହାରେ ବିକାର ଦ୍ୱାରା ଅଭୁଲା ହୁଅନ୍ତି । ବୃଷଭାନୁନନ୍ଦିନୀ କୃଷ୍ଣ ବିରହରେ ଉନ୍ମାଦିନୀ ହୋଇ ପାଗଳିନୀ ନାମ ବହି ଅଛନ୍ତି । ମନୁଷ୍ୟ ଈଦୃଶ ଦଶାରେ ଅବଶ୍ୟ ହିଁ ବିୟୁକ୍ତ ବିରହରେ ତନ୍ମୟଚିତ୍ତ ହୁଏ ସତ୍ୟ, କିନ୍ତୁ ସେହି ଶୋକ ଦଶାରେ କ୍ଷୁତ୍‌ପିପାସା ଓ କ୍ଲାନ୍ତି ଥାଏ; ଶ୍ରୀରାଧାଙ୍କର ତାହା ନ ଥିଲା । ସେ ଏକମନ ଏକ ଧ୍ୟାନରେ କ୍ଷୁତ୍‌ପିପାସା ଓ ଭ୍ରାନ୍ତି ବର୍ଜିତା ହୋଇ ମହାଯୋଗରେ ଏକାବେଳକେ ତନ୍ମୟମନା ହୋଇଥିଲେ । ଯେତେବେଳେ ମଧ୍ୟେ ମଧ୍ୟେ ହୃଦୟ ମଧ୍ୟରେ କୃଷ୍ଣଦର୍ଶନ ନ ପାଆନ୍ତି, ତେତେବେଳେ ହା କୃଷ୍ଣ ! ହା କୃଷ୍ଣ ! ବୋଲି କରୁଣ ସ୍ୱରରେ ରୋଦନ କରନ୍ତି । ତାହାଙ୍କର ଅନୁନୟ ବିନୟରେ ଏବଂ କାତର ଉକ୍ତିରେ ବନର ପଶୁ ପକ୍ଷୀ ମଧ୍ୟ ରୋଦନ କରନ୍ତି, ପୁଣି ଯେତେବେଳେ କୃଷ୍ଣ ଦର୍ଶନ ଲାଭ କରନ୍ତି ତେତେବେଳେ ତାଙ୍କର ଆଉ ଆନନ୍ଦର ସୀମା ରହେ ନାହିଁ । ସେ ପ୍ରେମପୂର୍ଣ୍ଣ ପଙ୍କଜ ନୟନରେ କୃଷ୍ଣଙ୍କୁ ନାନା ଭଙ୍ଗୀରେ ଅବଲୋକନ

କରନ୍ତି, ସେ ଶୋଭା-ସମ୍ପଦ କିଏ ବର୍ଣ୍ଣିପାରିବ ? ସେତେବେଳେ ହାସ୍ୟ ଛଟାରେ ତାଙ୍କ ବିଧୂବଦନଟି ଅତି ରମଣୀୟ କାନ୍ତି ଧାରଣ କରେ। ସେ ନିଜ ଭାବରେ ବିହ୍ୱଳା ହୋଇ ପ୍ରାଣବନ୍ଧୁଙ୍କର କେବେ ସ୍ତବ କରନ୍ତି, କେବେ ଅଧର ଦଂଶନ କରନ୍ତି ଏବଂ ଆନନ୍ଦ ଅଶ୍ରୁ ବର୍ଷଣ କରନ୍ତି । ତାଙ୍କର ହାସ, କାନ, ଅଙ୍ଗଭଙ୍ଗୀ ଓ ଅମୃତନାଦ ଶ୍ରବଣରେ କିଏ ବା ଧୈର୍ଯ୍ୟ ଧରି ରହିବ ? ବୃନ୍ଦାଳିକା ଯଶୋଦା ଯେତେବେଳେ ବିଶ୍ୱଜଗତକୁ କୃଷ୍ଣମୟ ଦେଖନ୍ତି, ସେତେବେଳେ ବିସ୍ମୟ ବ୍ୟାପାର ଉପସ୍ଥିତ ହୁଏ । କୃଷ୍ଣ ପ୍ରେମମୟୀ ଯଶୋଦା ଉର୍ଦ୍ଧ୍ୱବାହୁ ହୋଇ କୃଷ୍ଣ ଲାଭ ଆଶାରେ ଏକା-ବେଳକେ ହନ୍ତସନ୍ତ ହୁଅନ୍ତି ଏବଂ କୃଷ୍ଣ ବୋଲି ସମସ୍ତଙ୍କୁ ଧରିବାକୁ ଧାଆଁନ୍ତି, ବେଳେ ବେଳେ ନୀଳଇନ୍ଦୀବରବିନିନ୍ଦିତ ଅଖିଡ଼ୋଳା ଯୋଡ଼ିକ ଲେଉଟାଇ ଦେଇ ଥକା ହୋଇ ରହିଯାନ୍ତି । ତାଙ୍କର ଏହି ଅଦ୍ଭୁତ ବ୍ୟାପାର ଦେଖି ସଖିମାନେ ରାଇ ବିରହିଣୀ ବୋଲି କହନ୍ତି । ସେହି କାରଣରୁ ଏ ନାଟକର ଦ୍ୱିତୀୟ ଅଙ୍କଟି "ବିରହମାନ" ବୋଲି ଆଖ୍ୟାତ ହୋଇଅଛି ।

ଏପରି ଶ୍ରୀମତୀ ରାଧାରାଣୀ କାହିଁକି ଦୁର୍ଜ୍ଜୟମାନିନୀ ହୋଇଥିଲେ ତାହାର ପ୍ରକୃତ କାରଣ ସାଧାରଣରେ ବ୍ୟକ୍ତ ନାହିଁ । କାରଣ ଏହା ସମସ୍ତଙ୍କର ବୋଧଗମ୍ୟ ନୁହେଁ । ଅଧିକାଂଶ ବ୍ୟକ୍ତିଙ୍କ ବିବେଚନାରେ ଶ୍ରୀରାଧା ଚନ୍ଦ୍ରାବଳୀଙ୍କ ପ୍ରତି ବୈରତା ରଖି ଶ୍ରୀକୃଷ୍ଣଙ୍କଠାରେ ଦୁର୍ଜ୍ଜୟମାନ ପ୍ରକାଶ କରିଥିଲେ । କିନ୍ତୁ ତାହା ନୁହେଁ; ପୂର୍ବ ମହାଜନ ଓ ଗୋସ୍ୱାମୀମାନଙ୍କ ପ୍ରଣୀତ ପରମାର୍ଥ ଗ୍ରନ୍ଥମାନ ପାଠକଲେ ଜାଣି ପାରିବେ ଯେ ପ୍ରକୃତ ମାନର ରହସ୍ୟ କଅଣ ? ମହାକାବ୍ୟ ଗୀତଗୋବିନ୍ଦରେ କବିରାଜ ଜୟଦେବ ଗୋସ୍ୱାମୀ ମହାଶୟଙ୍କ ସ୍ମରଗରଳ ଶ୍ଲୋକରୁ ଭାବୁକ ଭକ୍ତମାନେ ଅବଶ୍ୟ ଦୃଷ୍ଟିପାତ ଥିବେ, ଅଉ ମଧ୍ୟ ସେହି ରାଧାପ୍ରେମ ଓ ଭାବ କାନ୍ତିକ ଅଙ୍ଗୀକାର କରି ଏହି ଧନ୍ୟ କଳିଯୁଗରେ ଶ୍ରୀଗୌରାଙ୍ଗ ମହାପ୍ରଭୁ ସ୍ୱୟଂ ଅବତୀର୍ଣ୍ଣ ହୋଇ ଭକ୍ତମଣ୍ଡଳୀରେ ଯେଉଁ ସମସ୍ତ ପ୍ରେମ ପ୍ରକଟ କରିଯାଇ ଅଛନ୍ତି, ସାଧକ ଓ ଉପାସକମାନଙ୍କୁ ତାହା ଅବିଦିତ ନୁହେଁ ।

ତଥାପି ଶାସ୍ତ୍ରରୁ କୃଷ୍ଣ ବୈଷ୍ଣବଙ୍କ କୃପାରୁ ଯାହା ଯାହା ସ୍ମରଣ ହୋଇଅଛି ଏ ସାନସ୍ଥାନେ ଅଧମ ଏହି ନାଟକରେ ତାହା ପ୍ରକାଶ କରଅଛି । ଭକ୍ତବୃନ୍ଦ ! କ୍ଷମା ସହିତ "ଭକ୍ତିଯୁମାନ' ର ସାରମର୍ମହି ଏହି ପୁସ୍ତକର ତୃତୀୟ ଓ ଚତୁର୍ଥ ଅଙ୍କରୁ ହୃଦୟଙ୍ଗମ କରିବେ ।

ଶ୍ରୀରାଧା କାହିଁକି ମାନିନୀ ହେଲେ ଓ ଶ୍ରୀରାଧାଙ୍କ ପାଦ ଶ୍ରୀକୃଷ୍ଣ କାହିଁକି ଧରିଥିଲେ ତାହାର ପ୍ରକୃତ କାରଣ ନ ଜାଣି ବହିରଙ୍ଗ ବ୍ୟକ୍ତିମାନେ ଭିଏ କେତେ ପ୍ରକାର ବୁଝିଥାଆନ୍ତି । ଏଣୁ ଏ ଅଧମ ତାହାର ସୂକ୍ଷ୍ମ ଅର୍ଥ ଜଣାଉଛି; ଶ୍ରବଣ କରନ୍ତୁ ;—

ଶ୍ରୀରାଧା ଯେପରି ଶ୍ରୀକୃଷ୍ଣଙ୍କୁ ମନ ମଧ୍ୟରେ ସର୍ବଦା ଭାବ ହେଉଥାନ୍ତି ଶ୍ରୀକୃଷ୍ଣ ଶ୍ରୀରାଧାଙ୍କୁ ସେପରି ଭାବ ପାରୁ ନ ଥିବାରୁ ନିଜେ ଶ୍ରୀକୃଷ୍ଣ ଦୋଷ ସ୍ୱୀକାର କରିଥିଲେ । ଶ୍ରୀରାଧାଙ୍କର ଏକନିଷ୍ଠ ପ୍ରେମ, ଶ୍ରୀକୃଷ୍ଣଙ୍କର ବହୁନିଷ୍ଠ ପ୍ରେମ । ଏହି ହେତୁ ଶ୍ରୀରାଧା "ହେ ବହୁବଲ୍ଲଭ ! ହେ ଚନ୍ଦ୍ରାବଳୀ ନାଥ ! ହେ ଚନ୍ଦ୍ରାବଳୀ କୋଡ଼ଭୃଙ୍ଗ" ବୋଲି ଶ୍ଳେଷଛଳରେ ସମ୍ବୋଧନ କରି ପାଖରୁ ଅନ୍ତର କରିଥିଲେ । ଶ୍ରୀରାଧିକା ପୂର୍ବରୁ ଶ୍ରୀକୃଷ୍ଣଙ୍କ ଲାଗି ଲୋକ, ବେଦ, ଦେବ, ଦେହ ଓ ବ୍ୟବହାରାଦି ସମସ୍ତ ପୂଣ ପରିତ୍ୟାଗ କରିଥିଲେ କିନ୍ତୁ ଶ୍ରୀକୃଷ୍ଣ ତାହା କରି ପାରି ନାହାନ୍ତି । ସୁତରାଂ 'ଯେ ଯଥା ମାଂ ପ୍ରପଦ୍ୟନ୍ତେ' ଇତ୍ୟାଦି ପ୍ରତିଜ୍ଞା ଭଙ୍ଗ ହେଲା । ଏହି କାରଣରୁ ଶ୍ରୀକୃଷ୍ଣ ନିଜର ଅପରାଧ କ୍ଷମା ନିମନ୍ତେ ଶ୍ରୀରାଧାଙ୍କୁ ବହୁବାର ବିନୟୀ ହୋଇଥିଲେ ଏବଂ କହିଥିଲେ, "ହେ ରାଧେ ! ତୁମ୍ଭର ସଂଯୋଗ ନିର୍ଦ୍ଦୋଷ ଅର୍ଥାତ୍ କାମଗନ୍ଧଶୂନ୍ୟ ପ୍ରତୀତିମାନ ହେଲେ ହେଁ ବା ନିର୍ମଳ ପ୍ରେମମୟ । ଯାହାକି ତୁମ୍ଭେ ଦୃଢ଼ ଶୃଙ୍ଖଳ ସମ୍ୟକ୍ ପ୍ରକାରେ ଛେଦନ କରି ମୋତେ ଭଜନ କରୁଅଛ, ଅର୍ଥାତ୍ ପରମ ଅନୁରାଗରେ ଆତ୍ମା ସମର୍ପଣ କରୁଅଛ । ତୁମ୍ଭର ସେହି ସାଧୁକୃତ୍ୟ ଦେବ ପରମାଣରେ ଆୟୁଲାଭ କଲେ ମଧ୍ୟ ମୁଁ ତୁମ୍ଭ ଋଣ ଶୁଝି ପାରିବି ନାହିଁ । ତୁମ୍ଭ ସୌଶୀଲ୍ୟ ଦ୍ୱାରା ତାହାର ପ୍ରତିକାର ହେଉ ।

ଶ୍ରୀରାଧାଙ୍କ ପ୍ରେମରେ କାମ ଅର୍ଥାତ୍ ଅସ୍ମେନ୍ଦ୍ରିୟ ତୃପ୍ତି ବାଞ୍ଛାର ଗନ୍ଧ ମାତ୍ର ନାହିଁ । ସର୍ବ ଭକ୍ତ ମୁକୁଟମଣି ଶ୍ରୀରାଧାଙ୍କ ପ୍ରେମ ଯେ ଅତ୍ୟନ୍ତ ମହାପ୍ରବଳ ନିଃସ୍ୱାର୍ଥମୟ, ତାହା ବର୍ଣ୍ଣନାତୀତ । କୃଷ୍ଣମାଧୁର୍ଯ୍ୟ, ଅର୍ଥାତ୍ ସର୍ବ ଅବସ୍ଥାରେ କୃଷ୍ଣଙ୍କର ଯେ କି ଗ୍ରୁରୁତା, ଶ୍ରୀରାଧାଙ୍କ ପ୍ରେମ ତାହାକୁ ପୁଷ୍ଟ କରେ; ତହିଁରେ ସନ୍ତୁଷ୍ଟ ହୋଇ ଶ୍ରୀକୃଷ୍ଣ-ମାଧୁର୍ଯ୍ୟ, ପ୍ରେମକୁ ବର୍ଦ୍ଧିତ କରୁଅଛି । ଏଠାରେ ଯଦିଓ ଶ୍ରୀରାଧିକାଙ୍କ ପ୍ରେମ ଓ ଶ୍ରୀକୃଷ୍ଣଙ୍କ ମାଧୁର୍ଯ୍ୟ ପୂର୍ଣ୍ଣ ବଢ଼ିବାର ସମ୍ଭାବନା ନାହିଁ, ତଥାପି ପରସ୍ପରଙ୍କ ସମ୍ମିଳନରେ ପରସ୍ପରଙ୍କ ବୃଦ୍ଧିରୂପ ବିରୁଦ୍ଧ ଧର୍ମଦ୍ୱାରା ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ଅସାଧାରଣ ଭଗବତ୍ତା ପ୍ରକାଶ ହେଉଅଛି ଏବଂ ଜଗତରେ ମଧ୍ୟ ରୂପ ଗୁଣବତୀ ନାୟିକାମାନଙ୍କର ରୂପ ଗୁଣବାନ ନାୟକମାନଙ୍କଠାରେ ପ୍ରୀତି, ନାୟକମାନଙ୍କ ମାଧୁରୀ ବଢ଼ାଇଥାଏ, ଏବଂ ସେହି ମାଧୁରୀ ନାୟିକାମାନଙ୍କର ପ୍ରୀତି ବଢ଼ାଇଥାଏ; ତାହା ଅପୂର୍ଣ୍ଣ ଓ ସ୍ୱାର୍ଥମୟ ଏବଂ ସ୍ୱାଭାବିକ ନୁହେଁ । ଶ୍ରୀରାଧାକୃଷ୍ଣଙ୍କ ପ୍ରେମ ଓ ମାଧୁର୍ଯ୍ୟ ପୂର୍ଣ୍ଣ ଏବଂ ସ୍ୱାଭାବିକ ଓ ସ୍ୱାର୍ଥହୀନ ହୋଇ ବୃଦ୍ଧିପାଇଅଛି, ଏହା ହିଁ ଯଥାର୍ଥ । ପ୍ରାକୃତ ନାୟିକା ନାୟକମାନଙ୍କ ପ୍ରେମଠାରୁ ଶ୍ରୀଶ୍ରୀରାଧାଗୋବିନ୍ଦଙ୍କ ପ୍ରେମ ବଉନତା ଅଛି । ଯାହା କି ନାଗଲୋକ, ନରଲୋକ ଓ ଦେବଲୋକ ଇତ୍ୟାଦିରେ ଦୁର୍ଲ୍ଲଭ । ସେହି ଅକୈତବ ଓ ଅପ୍ରାକୃତ ପ୍ରେମ ଆଉ ଅବ୍ୟକ୍ତ ଲୀଳାକୁ ସେହି ଲୀଳାମୟ ସର୍ବଶକ୍ତିମାନ୍ ଏକା ବ୍ୟକ୍ତ କରି ପାରନ୍ତି, ନଚେତ୍ ଅନ୍ୟ କାହାର ସାଧ୍ୟ ନୁହେଁ ।

ସ୍ୱାଭାବିକ ପରମାବସ୍ଥାର ନାମ—ରାଗ । ସେହି ରାଗ ବ୍ରଜପରିକର-ମାନଙ୍କଠାରେ ଅଭିବ୍ୟକ୍ତଭାବେ ନିତ୍ୟ ବିରାଜିତ । ଏଠାରେ ଭକ୍ତ ଶବ୍ଦରେ ନିତ୍ୟ ବ୍ରଜପରିକର । ଇଚ୍ଛାମୟ ଭଗବାନ ସ୍ୱଇଚ୍ଛାରେ ଯେପରି ଖେଳରେ ହାରି ଶ୍ରୀଦାମଙ୍କ କାନ୍ଧରେ ବହନ କରୁଥିଲେ, ଦଧିଭାଣ୍ଡ ଭାଙ୍ଗି ବାତ୍ସଲ୍ୟମୟୀ ଜନନୀ ଯଶୋଦାଙ୍କ କର୍ତ୍ତୃକ ବନ୍ଧନ ହୋଇଥିଲେ, ସେହିପରି ମାନର ହେତୁ ହୋଇ ମାନିନୀ ଶ୍ରୀରାଧାଙ୍କ ଦ୍ୱାରା ଭର୍ତ୍ସିତ ହେବା ଏବଂ ଚରଣ ଧରି କ୍ଷମା ପ୍ରାର୍ଥନା କଲେ ପୁଣି ଉପେକ୍ଷିତ ହେବା ପ୍ରଭୃତି ଲୀଳା ଆଚରଣ

କରି ରାଗମାର୍ଗର ଭକ୍ତମାନଙ୍କର ( ବ୍ରଜପରିକରମାନଙ୍କର ) ଭକ୍ତିମାନ୍ ଲୋକମାନଙ୍କୁ ଶିକ୍ଷା ଦେଇଅଛନ୍ତି; ତାହାହିଁ ଏ ନାଟକରେ ବର୍ଣ୍ଣିତ ହେଲା । କାରଣ, ଏହି ସବୁ ଲୀଳା ଶୁଣି ଲୋକେ ବ୍ରଜପରିକରଗଣଙ୍କ ଜାତୀୟ ଭକ୍ତି କରିବେ; ଏହାହିଁ ଶ୍ରୀଶ୍ରୀ ଭଗବାନଙ୍କର ଅଭିପ୍ରାୟ ।

ଶ୍ରୀଚୈତନ୍ୟ ଚରିତାମୃତେ, ଯଥା :—

"ବ୍ରଜେର ନିର୍ମ୍ମଳ ରାଗ ଶୁନି ଭକ୍ତଗଣ ।
ରାଗମାର୍ଗେ ଭଜେ ଯେନ ଛାଡ଼ି ଧର୍ମ୍ମ କର୍ମ୍ମ ।"

ପୁଣି

ଶ୍ରୀଚୈତନ୍ୟ ଚରିତାମୃତ ଆଦିଲୀଳା ୪ର୍ଥ ପରିଚ୍ଛେଦରେ ଲୀଳାମୟ ବୃନ୍ଦାବନଚନ୍ଦ୍ର ନିଜେ କହିଅଛନ୍ତି, ଯଥା :—

"ଆମାହୈତେ ରାଧା ପାୟ ଯେ ଜାତୀୟ ସୁଖ ।
ତାହା ଆସ୍ୱାଦିତେ ଆମି ସଦାଇ ଉନ୍ମୁଖ ॥
ନାନା ଯତ୍ନ କରି ଆମି ନାରି ଆସ୍ୱାଦିତେ ।
ସେ ସୁଖ ମାଧୁର୍ଯ୍ୟ ଘ୍ରାଣେ ଲୋଭ ବାଢ଼େ ଚିତ୍ତେ ॥
ରସ ଆସ୍ୱାଦିତେ ଆମି କୈଲ ଅବତାର ।
ପ୍ରେମ ରସ ଆସ୍ୱାଦିଲ ବିବିଧ ପ୍ରକାର ॥
ରାଗ ମାର୍ଗେ ଭକ୍ତ ଭକ୍ତି କରେ ଯେ ପ୍ରକାରେ ।
ତାହା ଶିଖାଇଲ ଲୀଳା ଆଚରଣ ଦ୍ୱାରେ ॥

ଏହି ସବୁ ସିଦ୍ଧାନ୍ତ ପରମ ନିଗୂଢ଼ ଅଟେ । ଶ୍ରୀଶ୍ରୀଚୈତନ୍ୟ ଚରିତାମୃତ ଆଦିଲୀଳା ଚତୁର୍ଥ ପରିଚ୍ଛେଦରେ ୰ କୃଷ୍ଣଦାସ କବିରାଜ ଗୋସ୍ୱାମୀ ମହାଶୟ ଲେଖିଅଛନ୍ତି, ଯଥା ;—

"ଏ ସବ୍ ସିଦ୍ଧାନ୍ତ ଗୂଢ଼ କହିତେ ନା ଜୁୟାୟ ।
ନା କହିଲେ କେହ ଇହାର ଅନ୍ତ ନାହିଁ ପାୟ ॥

ଅତଏବ କହି କିଛୁ କରିଦ୍ଧା ନିଗୂଢ଼ ।
ବୁଝିବେ ରସିକ ଭକ୍ତ ନା ବୁଝିବେ ମୂଢ଼ ॥

ହୃଦୟେ ଧରୟେ ଯେ ଚୈତନ୍ୟ ନିତ୍ୟାନନ୍ଦ ।
ଏ ସବ ସିଦ୍ଧାନ୍ତେ ସେଇ ପାଇବେ ଆନନ୍ଦ ॥

ଏ ସବ ସିଦ୍ଧାନ୍ତ ରସ ଆମ୍ରେର ପଲ୍ଲବ ।
ଭକ୍ତଗଣ କୋକିଲେର ସର୍ବଦା ବଲ୍ଲଭ ॥

ଅଭକ୍ତ ଉଷ୍ଟ୍ରେର ଇଥେ ନା ହୟ ପ୍ରବେଶ ।
ତବେ ଚିତ୍ତେ ହୟ ମୋର ଆନନ୍ଦ ବିଶେଷ ॥

ଯେ ଲାଗି କହିତେ ହୟ ସେ ଯଦି ନା ଜାନେ ।
ଇହା ବଇ କିବା ସୁଖ ଆଛେ ତ୍ରିଭୁବନେ ?"

ଉଷ୍ଟ୍ର ଜିହ୍ୱାରେ ଆମ୍ର ମୁକୁଳର ଆସ୍ୱାଦ ଗ୍ରହଣ କରିବାର ଶକ୍ତି ନାହିଁ; ସୁତରାଂ କଣ୍ଟକ ଚର୍ବଣରେ ମୁଖ କ୍ଷତ ହୁଏ, ତଥାପି ତ୍ୟାଗ କରିପାରେ ନାହିଁ, କେବଳ ଦୁଃଖ ଭୋଗ କରେ । ଏହିପରି ଅଭକ୍ତମାନଙ୍କ ହୃଦୟରେ ଭକ୍ତିରସ ଆସ୍ୱାଦନର ଶକ୍ତି ନାହିଁ, ନାନା ଦୁର୍ବାସନାରେ ସର୍ବଦା ବ୍ୟଥିତ; ତଥାପି ତାହା ତ୍ୟାଗ କରି ପାରନ୍ତି ନାହିଁ ବୋଲି ଅଭକ୍ତଙ୍କୁ ଉଷ୍ଟ୍ର ସଙ୍ଗେ ତୁଳନା ଦିଆ ଯାଇଅଛି ।

ଅନେକ ବ୍ୟକ୍ତି ଏହି ମାନଭଞ୍ଜନ ନାଟକର ଅଭିନୟ ଦର୍ଶନ କରି ସାଧାରଣ ଭାବରେ ବୁଝିଥାନ୍ତି ଓ ନାନା ପରିହାସ କରନ୍ତି, କିନ୍ତୁ ସେମାନେ ଯଦି ଯୁଗଳ ମୂର୍ତ୍ତିଙ୍କର ପ୍ରକୃତ ଭାବ ବୁଝି ପାରି ଥାନ୍ତେ, ଏପରି ଭାବନ୍ତେ ନାହିଁ । ଶ୍ରୀକୃଷ୍ଣଚନ୍ଦ୍ର ଭକ୍ତ ପ୍ରେମରେ ଏତେ ବଶୀଭୂତ ଯେ, ତାଙ୍କର ପରମଭକ୍ତ ଶିରୋମଣି ଶ୍ରୀରାଧାରାଣୀଙ୍କ ଲାଗି ମାନିନୀ,

ନାପିତୁଣୀ, ପଶାରୁଣୀ ଓ ଶେଷରେ ଯୋଗୀ ହେବା ପର୍ଯ୍ୟନ୍ତ ଗଳ୍ପ । ଆପଣମାନେ ଏହି "ମାନଭଞ୍ଜନରୁ" ଜାଣି ପାରିବେ, ଭଗବାନ ଭକ୍ତର ବଶ୍ୟତା ଅଧୀନ ।

ଯାହା ହେଉ ଏ ବ୍ରଜଚନ୍ଦ୍ରଙ୍କୁ ପ୍ରକୃତ ଭକ୍ତି ଭାବରେ ସମସ୍ତେ ଭୁଞ୍ଜନ୍ତୁ । ଏହାହିଁ ଶ୍ରୀ ଶ୍ରୀ ଗୁରୁ ଗୌରାଙ୍ଗ ଦେବଙ୍କ ପାଦପଦ୍ମରେ ଏ ଭକ୍ତିହୀନ କାଙ୍ଗାଳର ଏକାନ୍ତ ପ୍ରାର୍ଥନା । ଇତି ।

ଶ୍ରୀ ଶ୍ରୀ ରାଧାଗୋବିନ୍ଦ ରାସଲୀଳା ମଣ୍ଡଳୀ
। ମୁ । କଟକ, ଝାଙ୍ଗୀ
ତା ୧ । ୬ । ୩୦

ନିବେଦକ
ପ୍ରଭୁପାଦାଶ୍ରିତ—
ବାବାଜୀ ଶ୍ରୀ ବୈଷ୍ଣବ ଚରଣ ଦାସ

## ଚତୁର୍ଥ ସଂସ୍କରଣ ବିଜ୍ଞାପନ ।

ମଦ୍ ବିରଚିତ ଓ ଗ୍ରନ୍ଥିତ ଏହି ମାନଭଞ୍ଜନ ନାଟକ ଖଣ୍ଡିକ ଉପରୋକ୍ତ ତା ୧ । ୬ । ୩୦ ରେ ତୃତୀୟବାର ମୁଦ୍ରିତ ହୋଇଥିଲା । ପରମ କରୁଣାମୟ ଶ୍ରୀ ଶ୍ରୀ ଗୁରୁଗୋବିନ୍ଦଙ୍କ ଅପାର କରୁଣା ବଳରୁ ଅବଧି ଛମାସ ମଧ୍ୟରେ ଏକହଜାର ପୁସ୍ତକ ବିକ୍ରୟ ଶେଷ ହୋଇ ଯିବାରୁ ବର୍ତ୍ତମାନ ଏ ଗ୍ରନ୍ଥକୁ ଉତ୍ତମ ରୂପେ ସଂଶୋଧନ କରି ଓ ସ୍ଥାନେ ସ୍ଥାନେ ପରିବର୍ତ୍ତନ ଓ ପରିବର୍ଦ୍ଧନ ପୂର୍ବକ ଚତୁର୍ଥ ବାର ମୁଦ୍ରିତ କରାଇଲୁଁ । ଆଶା କରୁଁ ସହୃଦୟ ପାଠକ ପାଠିକାମାନେ ସାଦରେ ଗ୍ରହଣ କରିବେ । ଇତି ।

ଶ୍ରୀଶ୍ରୀରାଧାଗୋବିନ୍ଦ ରାସଲୀଳା ମଣ୍ଡଳୀ
କଟକ
ତା ୫ । ୭ । ୩୦

ଆପଣମାନଙ୍କର
ବାବାଜୀ
ଶ୍ରୀ ବୈଷ୍ଣବ ଚରଣ ଦାସ

# ପ୍ରସ୍ତାବନା



( ମଙ୍ଗଳାଚରଣ ଶ୍ଳୋକ )

ମାଙ୍ଗଲ୍ୟଂ ଦଧି ଅକ୍ଷତଂ ପ୍ରଦୀପକଂ ରମ୍ଭାତରୁ ସ୍ଥାପନଂ ।
ଅମ୍ଭୁପୂର୍ଣ୍ଣଘଟଂ ସୁପୀତ ଦୁକୂଳଂ ଦୁର୍ବାଦଳଂ ତଣ୍ଡୁଳଂ ॥
ଚୂତଂ ପଲ୍ଲବ ନାରକେଳ ସହିତଂ ପଦ୍ମୋପରି ସ୍ଥାପିତଂ ।
ଶ୍ରୀ ଗୋବିନ୍ଦ ସୁବର୍ଦ୍ଧିବାସ କୁରୁତେ ନାନାଦି ବାଦ୍ୟୋତ୍ସବଂ ॥

## ଶ୍ରୀଗୁରୁବନ୍ଦନା

(ବ୍ରଜ ବେଶ ଧାରଣ କରିଥିବା ଅଭିନୟକାରୀ ବାଳକମାନେ ଏକଧାଡ଼ିରେ ଠିଆହୋଇ ଅର୍ଘ୍ୟ ବନ୍ଦାପନା ଥାଳୀମାନ ହସ୍ତରେ ଧରି ସମସ୍ୱରେ ଗାଇବେ :—)

ଅଜ୍ଞାନ ତିମିରେ ଚକ୍ଷୁ ଅନ୍ଧକାର ଥିଲା ।
ଜ୍ଞାନାଞ୍ଜନ ଦେଇ ଯେହୁ ପ୍ରକାଶ କରିଲ ହେ ॥
ଏବଂଭୂତ ଶ୍ରୀଗୁରୁଙ୍କ ଚରଣ ତଳେ ଯାଇ ।
ଭକ୍ତିଭରେ ପ୍ରଣମୁଛୁଁ ପୁନଃପୁନେ ହୋଇ ହେ ॥
ଜୟ ଜୟ ଶ୍ରୀକୃଷ୍ଣ ଚୈତନ୍ୟ ଗୌରଚନ୍ଦ୍ର ।
ସାକ୍ଷାତେ ଈଶ୍ୱର ପ୍ରଭୁ ମଧୁର ଆସ୍ୱାଦ ହେ ॥

## ପ୍ରସ୍ତାବନା

କୋଟି ଜନ୍ମାର୍ଜିତ ପୁଣ୍ୟେ ଯେ ଲବ୍ଧ ନ ହୁଏ ।
ଗୁରୁ କୃପା ହେଲେ ସେ ଯେ ଏ ତତ୍ତ୍ୱକୁ ପାଏ ହେ ॥
ଶିକ୍ଷାଗୁରୁ କୃପାମୟୀ ଶ୍ରୀମତୀ କଶୋରୀ ।
ମଦନମୋହନ ଅଙ୍ଗେ ନିବାସ ଯାହାର ହେ ॥
ସେହି ଶିକ୍ଷାଗୁରୁ ପାଦପଦ୍ମେ ଅଗ୍ରେ କରି ।
ବନ୍ଦନା କରୁଛୁଁ ଅମ୍ଭେ ସର୍ବେ ଅନୁସରି ହେ ।

( ଶ୍ରୀ ଶ୍ରୀ ରାଧାଗୋବିନ୍ଦ ଓ ଗୌରନିତାଇ ପ୍ରତିମୂର୍ତ୍ତି ଏବଂ ତୁଳସୀ ବୃକ୍ଷରୂପା ବୃନ୍ଦାଦେବୀଙ୍କୁ ଅର୍ଘ୍ୟ ବନ୍ଦାପନା ପୁଷ୍ପାଞ୍ଜଳି ଦେଇ ନମସ୍କାର କରି ବାଳକଗଣ ଧୀରେ ଧୀରେ ପ୍ରସ୍ଥାନ )

## ପରଦା ପତନ



ପ୍ରସ୍ତାବନା

## ଯୁଗଳ ବନ୍ଦନା

(ନିତ୍ୟସ୍ଥଳେ ଯୁଗଳମୂର୍ତ୍ତି ପ୍ରେମାବେଶେ ଦଣ୍ଡାୟମାନ, ଅଷ୍ଟସଖୀ ଚାମର-ଆଲଟ ହସ୍ତେ ବ୍ୟଜନ କରୁ କରୁ ସୁମଧୁର ସ୍ୱରେ 'ଗାଇବେ)

ବୃନ୍ଦାରଣ୍ୟ ସାର୍ବ୍ବଭୌମ ପଦମଣ୍ଡିତ, ରାଧାଗୋବିନ୍ଦ !
ସର୍ବ ବ୍ରଜବାସୀ ନେତ୍ର ସମ୍ମତ, ରାଧାଗୋବିନ୍ଦ !
ମହାଭାବୋଜ୍ଜ୍ୱଳ ରସ ଶ୍ରୀ ମୂର୍ତ୍ତି, ରାଧାଗୋବିନ୍ଦ !
ରାଙ୍କାବଧୂ ବ୍ରଜଜୟୀ ଚନ୍ଦ୍ରଦ୍ୟୁତି, ରାଧାଗୋବିନ୍ଦ !
ସର୍ବାଶ୍ରୟ ସର୍ବଗ ସନାତନ, ରାଧାଗୋବିନ୍ଦ !
କିଶୋର ବୟସ ନିତ୍ୟ ନୂତନ, ରାଧାଗୋବିନ୍ଦ !
ଗୋକୁଳେଶ୍ୱରୀ ବାତ୍ସଲ୍ୟ ସଦନ, ରାଧାଗୋବିନ୍ଦ !
ନିଜ ପରିଜନ ଜୀବଜୀବନ, ରାଧାଗୋବିନ୍ଦ !
ଗୋଷ୍ଠ କୁଳଜା ନିକର ବେଷ୍ଟିତ, ରାଧାଗୋବିନ୍ଦ !
ନାନାରତ୍ନାଳଙ୍କାର ବିଭୂଷିତ, ରାଧାଗୋବିନ୍ଦ !
ରାସମଣ୍ଡଳ ମଧ୍ୟେ ବିରାଜିତ, ରାଧାଗୋବିନ୍ଦ !
ଗୃହ୍ଣସରସୀରୁହ ବଂଶୀ ହସ୍ତ, ରାଧାଗୋବିନ୍ଦ !
ଚିନ୍ତ ଚିନ୍ତ ଏ ଯୁଗଳଚରଣ, ରାଧାଗୋବିନ୍ଦ !
ପ୍ରାଣ ସମର୍ପି ପଶିଲି ଶରଣ, ରାଧାଗୋବିନ୍ଦ !

(୰ ଗୋପାଳକୃଷ୍ଣ)

(ପ୍ରେମାନନ୍ଦେ ବ୍ରଜସୁନ୍ଦରୀଗଣ ହୁଳହୁଳି ପକାଇବା ସମୟେ)

## ପରଦା ପତନ





# ମାନଭଞ୍ଜନ ନାଟକ

( ବସନ୍ତ ଉତ୍ସବ ବା ଈର୍ଷାମାନ ଆରମ୍ଭ )

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

ଗୌରୀ ମନ୍ଦିର

(ପ୍ରସନ୍ନମୟୀ ଗୌରୀମୂର୍ତ୍ତି ଦଣ୍ଡାୟମାନା ଓ ମୁଗ୍ଧା କନ୍ୟାଗଣ
କରଯୋଡ଼ ବନ୍ଦନା ଗୀତ ଗାଉଥିବା )

**ବନ୍ଦନା**

ଜୟ ଜୟ ଭଗବତୀ ଦେବୀ କାତ୍ୟାୟନୀ ।
ମହାଯୋଗିନୀ ମାହେଶ୍ବରୀ ଜଗତ ଜନନୀ ମା । ୧ ।

ନମସ୍ତେ ଙ୍କିହ୍ନବାହ୍ନଳୀ ମହ୍ନଷମର୍ଦ୍ଦିନୀ ।
ନମସ୍ତେ ଚଣ୍ଡିକେ ମାତଃ ତ୍ରୈଲୋକ୍ୟ ତାରିଣୀ ମା । ୨ ।
ନମସ୍ତେ ନମସ୍ତେ ସର୍ବ ମଙ୍ଗଳଦାୟିନୀ ।
ନମସ୍ତେ ଅଭୟହସ୍ତା ମହେଶ ମୋହିନୀ ମା । ୩ ।
ବର ଏହି କୃପା ମାତଃ ଦେନ ଗୋ ଦୟିନୀ ।
ବର ଦିଅ ପ୍ରାଣପତି ହୋନ୍ତୁ ଚକ୍ରପାଣି ମା । ୪ ।



ପୌର୍ଣ୍ଣମାସୀ—( ପ୍ରସନ୍ନମନେ ) ଭକ୍ତିମତି ମୁଗ୍ଧା କନ୍ୟାଗଣ ! ତୁମ୍ଭମାନଙ୍କ ପୂଜାରେ ମୁଁ ବଡ଼ ଆନନ୍ଦିତା ହେଲି । ଏବେ କଲ୍ୟାଣ କରୁଛି, ଗୋକୁଳଚନ୍ଦ୍ର ବୃନ୍ଦାବନଚନ୍ଦ୍ର ତୁମ୍ଭମାନଙ୍କୁ ପତି ରୂପରେ ପ୍ରାପ୍ତ ହୁଅନ୍ତୁ ।
( ଅନ୍ତର୍ଦ୍ଧାନ )

ପ୍ରଥମା କନ୍ୟା—ଆହା, ଭଗବତୀ ପୌର୍ଣ୍ଣମାସୀଙ୍କର କି ଅସୀମ ଦୟା !

ଦ୍ୱିତୀୟା କନ୍ୟା—ତା' ନ ହେଲେ ଏପରି ବର ଦିଅନ୍ତେ ?

ତୃତୀୟା କନ୍ୟା—ସଖି ! ଦେଖ, ନବବସନ୍ତ ଆଜି ବୃନ୍ଦାବନରେ ବିହାର କଲାଣି !

ଚତୁର୍ଥୀ କନ୍ୟା—ଏ ବ୍ରଜମଣ୍ଡଳରେ ଯେ ନାଗରୀମାନଙ୍କ ମନରେ କାମ ଜ୍ୱର ପଶିଲାଣି ।

## ଗୀତ

ବ୍ରଜମଣ୍ଡଳରେ,                    ନାଗରୀ ମନରେ,
ପଶିଲା କାମର ଥ୍ବର ।
କେଳି ପ୍ରସରରେ,                    ନାଗର ସଙ୍ଗରେ,
ମିଳନ ହେବ କପର ?
ବରହରେ ବଭୋଳ,
( ସର୍ବେ ) ପ୍ରେମରେ ହୋଇ ଅକୁଳ । ୧ ।
ଯମୁନା ତଟରେ,                    କାନ୍ତ ପ୍ରାନ୍ତରେ,
କୁସୁମ ପ୍ରଫୁଲ୍ଲ ଅତ ।
ମିଳି ଭୃଙ୍ଗକୁଳ,                    ହେଲେଣି ଚଞ୍ଚଳ,
ଏ ଫୁଲେ ସେ ଫୁଲେ ମାତ ।
ବହୁଲଣି                    ( ଦେଖ ବହୁଲଣି )
ମଳୟ ମରୁତ ବହୁଲଣି ।
କୁହୁ କୁହୁ ପିକ ଗାଇଲଣି । ୨ ।
( କନ୍ୟାଗଣ ନାଚି ନାଚି ଗୀତ ଗାଇ ଗାଇ ପ୍ରସ୍ଥାନ )

ପଟ୍ଟପରବର୍ତ୍ତନ



# ପ୍ରଥମ ଅଙ୍କ

## ଦ୍ୱିତୀୟ ଦୃଶ୍ୟ

### ଶ୍ରୀରାଧାଙ୍କ କୁସୁମ ଉଦ୍ୟାନ

( ଲଳିତା ଓ ବିଶାଖା ସହିତ ଶ୍ରୀରାଧାଙ୍କ ପ୍ରବେଶ )

## ଗୀତ

ନବ ବସନ୍ତ ସମୟ ।
ନବ ବୃନ୍ଦାବନ ରସମୟ ଗୋ । ଘୋଷା ।
ମଳୟ ଅଚଳ— କୋଳରୁ ପ୍ରବଳ
ଦକ୍ଷିଣା ପବନ ବହିଲା,
ଉଲ୍ଲସି ଲତା ସବୁ, ନୂତନ ପଲ୍ଲବ,
ରସାଳ ମୁକୁଳ ଧଇଲା । ୧ ।
ନବ ମାଧବୀକା, ମଧୁପ ଲୀଳିକା,
ମଲ୍ଲୀ ବଲ୍ଲୀ ଫୁଲେ ଭରିଲା;
ମାଳତୀ କମଳ, ନୀଳୋତ୍ପଳ ଫୁଲେ,
ଗନ୍ଧ ଗନ୍ଧବହ ଧଇଲା । ୨ ।
ଦ୍ୱିଗୁଣେ ଉଲ୍ଲାସ, ହୋଇଣ ପଳାଶ,-
କୁସୁମ ବିକାଶ କରାଇଲା ।
ନିକୁଞ୍ଜ ଭୁବନେ, ରମ୍ୟ ଉପବନେ,
କୋକିଳ ପଞ୍ଚମେ ଗାଇଲା । ୩ ।



ବିଶାଖା—ରାଧେ ! ବସନ୍ତ ନବୀନ ମଦନଙ୍କୁ ଘେନି ବୃନ୍ଦାବନରେ ପ୍ରବେଶ ହେଲଣି । ଧନି ! ମୋହନଙ୍କଠାରେ ଅଭିମାନ କରବୁ ନାହିଁଟି ?

ଲଳିତା—ରାଧେ ! ଦ୍ୱିଜରାଜ ଅଭ ଋତୁରାଜ ଏ ଦୁହିଙ୍କ ସାହାଯ୍ୟରେ କାମରାଜା ବୃନ୍ଦାବନରେ ଚକ୍ରବର୍ତ୍ତୀ ହେଲଣି । କୋକିଳ ଡାକୁଅ ହୋଇ ଡାକ ଡାକ ନବଗରହିଣୀମାନଙ୍କ ହୃଦୟକୁ ଚମକାଇଲଣି । ଧନି ! ମୋହନଙ୍କଠାରେ ଅଭିମାନିନୀ ହେବୁ ନାହିଁଟି ?

ବିଶାଖା—ରାଧେ ! ନବପଲ୍ଲବ ଗୁଡ଼ିକ ସୁରଙ୍ଗ ପତାକା ହୋଇ ଉଡ଼ିଲଣି । ଅଭ ଶୁକ, କପୋତ, କୁମ୍ଭାଟୁଅ ପ୍ରଭୃତଙ୍କ କଣ୍ଠଧ୍ୱନି ପାଦାନ୍ତ ବାଦ୍ୟନାଦ ହେଲଣି । ଧନି ! ମୋହନଙ୍କଠାରେ ଅଭିମାନ କରବୁ ନାହିଁଟି ?

ଲଳିତା—ରାଧେ ! ମଦନ ଫୁଲଧନୁ ଧର ଭ୍ରମରଠାରେ ଗୁଣଦେଇ ଝଙ୍କାର ନାଦରେ ଅଶୋକ, ଚୂତ, କମଳ, ନଅଳୀ, ନୀଳୋତ୍ପଳ ଏହି ପଞ୍ଚଶରକୁ ଛାଡ଼ିଲଣି । ଧନି ! ମୋହନଙ୍କଠାରେ ଅଭିମାନିନୀ ହେବୁ ନାହିଁଟି ?

ବିଶାଖା—ରାଧେ ! ମଳୟ ପବନ ମୁକୁଳ ଚାମର ଧର ଢାଳିଲଣି, ନାଗେଶ୍ୱର ଫୁଲଗୁଡ଼ିକ ଧବଳଛତ୍ର ଟେକିଲେଣି । ଧନି ! ମୋହନଙ୍କଠାରେ ଅଭିମାନ କରବୁ ନାହିଁଟି ?

ଲଳିତା—ରାଧେ ! ଦେଖିଲଣି ଗୋ ! ଏ କେତକୀଫୁଲ ଗୁଡ଼ିକୁ ଦାଢ଼ୁଅ କୁନ୍ତ ଅଭ ଝୁରିଅନା ଫୁଲଗୁଡ଼ିକୁ ଛୁରି କର

ଶତ୍ରୁମାନଙ୍କୁ ମାରିବାକୁ କାମ ଉଦ୍ୟମ କଲାଣି । ଧନ୍ୟ ! ଦମ୍ଭ ରଖି ଧୈର୍ଯ୍ୟଧର; ଅମ୍ଭର ମୋହନ ରାଜା ଥିଲେ ଆଉ କାମରାଜା କଅଣ କରି ପାରିବ ?

ରାଧା—( ଉତ୍କଣ୍ଠାରେ ) ସଖି ! ମୋର ମନ ହେଉଛି ଏଇ ବସନ୍ତ ସମୟରେ ପ୍ରାଣବଲ୍ଲଭଙ୍କ ସଙ୍ଗେ ବିହାର କରିବାକୁ । ମୋତେ ଆଣିଦିଅ ସଖି !

## ଗୀତ

ଶୁଣ ପ୍ରିୟ ସହଚରୀ !
ଆଣିଦିଅ ମୋର କୁଞ୍ଜବିହାରୀ ଗୋ ।
ଏତେ କହୁଛି ମୁଁ କର ଧରି, ସଜନୀ ଗୋ । ୧ ।
ଗଲା ମାଳି ମୋର ନିଅ ଗୋ ( ଲଳିତେ )
ଗିରିବରଧାରୀ ଗଳାରେ ଦିଅ ଗୋ ।
ଶୀଘ୍ରେ କୁଞ୍ଜକୁ ବେଗେ କରାଅ, ସଜନୀ ଗୋ । ୨ ।
ଘଡ଼ିଏ ନ ରହୁ ଚଳ ।
ଘନଶ୍ୟାମଙ୍କୁ ଟିକି କହିବ ମୋର ଗୋ ।
ତାଙ୍କୁ କୋଟି କୋଟି ନମସ୍କାର, ସଜନୀ ଗୋ । ୩ ।
ଆଶା ମୋ ନାହିଁ କାହିଁରେ ।
ଆସିବାକୁ ପଥ ଗୃହିଁଛି ଧୀରେ ଗୋ ।
ହାଟ ହେଲେ ହେଉ ଜଗତରେ, ସଜନୀ ଗୋ । ୪ ।

ଚିତ୍ତକୁ ଦେଇଛୁ ବନ୍ଧ ।
ଗୃହକୁ କର ଗମନ ଏଣିକି ଗୋ ।
ଯାଇଁ କହ ଯା ବେଣୁପାଣିକି, ସଜନି ଗୋ । ୫ ।

( ଗୀତ ଗାଇ ଗାଇ ଦୁଇ ସଖିଙ୍କ ସହିତ ପ୍ରସ୍ଥାନ )

ପଟ୍ଟ ପରିବର୍ତ୍ତନ



## ପ୍ରଥମ ଅଙ୍କ

### ତୃତୀୟ ଦୃଶ୍ୟ

ଚନ୍ଦ୍ରାବଳୀଙ୍କ ପୁଷ୍ପ ଉଦ୍ୟାନ

( ଚନ୍ଦ୍ରାବଳୀ, ଶୈବ୍ୟା, ପଦ୍ମାଙ୍କ ପ୍ରବେଶ )

### ଗୀତ

ଅଇଲା ବସନ୍ତ ରାଜା ଶ୍ରୀ ବୃନ୍ଦା କାନନ ।
ମଳୟ ପବନ ବହେ ଆମୋଦବର୍ଦ୍ଧନ ଗୋ । ୧ ।
ତରୁଲତା ପଲ୍ଲବିତ ଶୋଭା ପ୍ରକାଶିଲା ।
ବନଭୂମି କାନ୍ତି ବୃଦ୍ଧି ପରିମଳ ହେଲା ଗୋ । ୨ ।
ସୁରଙ୍ଗ ପଲ୍ଲବ ଶୋଭା ସକଳ ଦ୍ରୁମରେ ।
କି ଅବା ସିନ୍ଦୁର ବୃଷ୍ଟି ଦ୍ୱାଦଶ ବନରେ ଗୋ । ୩ ।

କାଇଁ ଯୂଇ ପ୍ରଫୁଲ୍ଲିତ ମଲ୍ଲୀ ବିକଶିଲା ।
ମାଳତୀ ମାଧବୀ ପୂଣି ସୁଗନ୍ଧ ବୂହିତ ଗୋ । ୪ ।
ସୁନାସୀ ସୁ-ନାସୀ ପର ପ୍ରଭା ପ୍ରକାଶିଲା ।
ପାଟଳି କୁଟଜର ରଙ୍ଗଶାଢ଼ୀକେ ବାନ୍ଧିଲୁ ଗୋ । ୫ ।

ପଦ୍ମ—( ଚନ୍ଦ୍ରାବଳୀଙ୍କ ପ୍ରତି ହସି ହସି ) ସଖି ! ଏ ନୀଳମଣି ମାଳାରେ କଅଣ ଜପୁଚ ?

ଚନ୍ଦ୍ରାବଳୀ—ପଦ୍ମେ ଗୋ ! ତେମେ କଣ ଜାଣି ନାହଁ ? ମୋ ନୀଳମଣିଙ୍କ ନାମ ଗୁଣକୁ ଏକା ଜପୁଚି ।

ଶୈବ୍ୟା—ସଖି ! ତାଙ୍କୁ ପାଇବାକୁ ପରା ଗଉରୀ ପୂଜା କରୁଚ ?

ଚନ୍ଦ୍ରାବଳୀ—ହଁ ସଖି ! ତାଙ୍କର ଲାଗି ଏତେ କଥା ।

ପଦ୍ମ – ଆଜ କଣ ଗଉରୀ ପୂଜା ସମ୍ଭାର ମନେ ପଡୁନାହିଁ ?

ଚନ୍ଦ୍ରାବଳୀ—ହଁ ସଖି ! ମନେ ପଡୁଚି ।

ଶୈବ୍ୟା—ତେବେ ଆସ, ଫୁଲ ତୋଳି ଚଞ୍ଚଳ ଯିବା ।

ପଦ୍ମ—ସଖି ! ତେଣେ ଭଦ୍ରା, ଶ୍ୟାମଳା ପୂଜାଦ୍ରବ୍ୟ ଯୋଗାଡ଼ କରି ସାରି ଥିବେଣି; ଆସ, ଆସ ।

## ଗୀତ

ଚନ୍ଦ୍ରା ଶ୍ୟାମା କାମା ପ୍ରେମା,  ନବ ଅନୁରାଗ ଧାମା,
ଧନ୍ୟା ଏହ ସକଳ ଅଙ୍ଗନା ( ସଖି ଗୋ )

ଯତନେ ରେଚନା ଭୁଲ,                    ପାଇବାକୁ ବନମାଳୀ,
ଭାଦ୍ର୍ୟାମିନୀ ବ୍ରତେ ତନମନା ( ସଖି ଗୋ )
ଅସ ଅମେ ଦେବୀ ପୂଜା ସାର ।
ଭେଟିବା ରଙ୍ଗଣୀ କୁଞ୍ଜେ                    ବଂଶୀଧାରୀଙ୍କ ସହଜେ
କାହିଁକି ଦେଉଚ ମନ ମାର (ସଖି ଗୋ) ॥

ଶୈବ୍ୟା—ପଦ୍ମେ ! ସର୍ବମଙ୍ଗଳାଙ୍କ ପୂଜାକୁ ଫୁଲ ତୋଳିବା ପରା ?

ପଦ୍ମା—ମତେ କଅଣ ପଚାରୁଚ ମ ? ପ୍ରିୟସଖି ଚନ୍ଦ୍ରାବଳୀଙ୍କି ପଚାର ।

ଶୈବ୍ୟା—( ଚନ୍ଦ୍ରାବଳୀଙ୍କି ଆଲିଙ୍ଗନ କରି ) ସଖି ! ଆଜି କଣ ଫୁଲ ତୋଳା ହେବ ନାହିଁ ?

ଚନ୍ଦ୍ରାବଳୀ—( ଅଳ୍ପ ହସି ) ହଁ ତୋଳ ।

ପଦ୍ମା—ସଖି ! ଦେଖିଲଣି ଗୋ, ଏ ରଙ୍ଗଣୀ ବନଟି କେଡେ ସୁନ୍ଦର ଦିଶୁଛି !

## ଗୀତ

ଦେଖ ଟୋ ପରାଣ ଧନ !
କେଡେ ସୁନ୍ଦର ଏ ରଙ୍ଗଣୀବନ ଗୋ ।
ଅସ ଅସ ତୋଳିବା ବନ୍ଧନ, ସଜନି ଗୋ । ୧ ।
ନାଗେଶ୍ୱର ଫୁଲ ଏଇ ।
ନାଗରବରଙ୍କୁ ଭେଟିବା ନେଇ ଗୋ !
ଆଜ ମଣ୍ଡିବା କଳାକହ୍ନାଇଁ, ସଜନି ଗୋ ! ୨ ।

ବଉଳ ଫୁଲକୁ ତୋଳ,
ଗୋଟି ଗୋଟି କର ଗୁନ୍ଥି ସକଳ ଗୋ !
ଅଜ କରବା ବରଣମାଳ, ସଜନ ଗୋ ! । ୩ ।

ଏ ଚନ୍ଦ୍ରକାନ୍ତ ନଅଳୀ ।
ମନ ଦେଇ ତୋଳ ପଦ୍ମିନୀ ଅଳୀ ଗୋ !
ଶୋଭି ଦଶିବ ବରଣଥାଳୀ, ସଜନ ଗୋ । ୪ ।

(ଚନ୍ଦ୍ରାବଳୀ ସଖୀ ଦୁହିଙ୍କ ସଙ୍ଗେ ସଙ୍ଗେ ଫୁଲ ତୋଳି ତୋଳି ପ୍ରସ୍ଥାନ

ପଞ୍ଚ ପରିବର୍ତ୍ତନ



## ପ୍ରଥମ ଅଙ୍କ

### ଚତୁର୍ଥ ଦୃଶ୍ୟ

କୁସୁମିତ ବୃନ୍ଦାବନ

( ଶ୍ରୀକୃଷ୍ଣ ଓ ମଧୁମଙ୍ଗଳଙ୍କ ପ୍ରବେଶ )

### ଗୀତ

ଶ୍ରୀକୃଷ୍ଣ—ଦେଖ ଫୁଲବନ                    ପୁଲୀନ କାନନ,
ବସନ୍ତ ସୁଷମା ହୋଇଛୁ ।
ଅବନୀରେ ଅଜ,                    ବାଲୁକା ରାଶିରେ,
ମକରନ୍ଦ ରଜ ଝରୁଛୁ ॥

ଦେଖ ଦେଖ ମୋର ପରାଣ ବନ୍ଧୁ !
ମଧୁକର ମଧୁ ଚୁମ୍ବନେ ପନ୍ଥ । ୧ ।
ଉଚ୍ଛୁଳ ଉଚ୍ଛୁଳ,—                    ପଲ୍ଲବେ ମଞ୍ଜୁଳ,
ବହଇ ମଳୟ ଅନିଳ ।
ପିକ କୁହୁରତ,                    ଶ୍ରବଣେ ପୂରତ,
ମଦନ ମାଦକେ ବିଭୋଳ ॥
କଦମ୍ବେ ମୟୂର, ଡ଼ାଳିମ୍ବେ ଶୁକ,
ଦ୍ରାକ୍ଷାଡ଼ାଳେ ସାରି ଗାଉଛୁ ଦେଖ । ୨ ।
( ଅଜ ) ମହାନିରମଳ,                    ଶୁଦ୍ଧ ଫୁଲମଲ
ରୁଚିର ରଜନୀ କାଳରେ ।
ବସନ୍ତ ଉତ୍ସବ,                    ଅଜ ଅରମ୍ଭିବ
ନବ ବ୍ରଜବଧୂ ମେଳରେ ।
( ମୋର ) ଏହୁ ନଟବର ବେଶରେ ।
ମଜାଇବ ତାଙ୍କୁ ପ୍ରେମେ ରସରେ । ୩ ।

ମଧୁମଙ୍ଗଳ—( ରହସ୍ୟ ଭଙ୍ଗିରେ ) ହା ! ହା ! ହା ! ହା ! ହା !
ସଖା ! ଇଏତ ବଡ଼ ଆନନ୍ଦର କଥା, ମାତ୍ର ତୁମ୍ଭଙ୍କୁ ସେହି ଅବଳାମାନେ ଜିଣିବେ, ଅଜ ତମେ ଜିଣି ପାରିବ ନାହିଁ, ପାରିବ ନାହିଁ ।

**ଗୀତ**

ହେ ନାଥ ଛଇଳ,                    ଭଲ ତ କହିଲ,
ତୁମ୍ଭଙ୍କୁ ଅବଳା ଜିଣିବେ ।

ଖେଲା ଲୀଳା ରଙ୍ଗେ,                    ପ୍ରେମର ତରଙ୍ଗେ,
ତୁମ୍ଭ ମନ ଧନ କିଣିବେ ॥

ଦେଖ ଦେଖ ଘନଶ୍ୟାମ ସୁନ୍ଦର ।
ମଦନ କଲାଣି ପ୍ରେମ ଦ୍ବନ୍ଦର ॥
ଜାଣିଥାଅ ଅହେ ଲବଣୀ ଚୋର !
ଏ କଥା ହେଲାଣି ମୋତେ ଗୋଚର ॥

(ଦେଖ) ବସନ୍ତ ସଙ୍ଗରେ ମଦନ ରାଜା ।
ଉଡାଇଲାଣି ହେ ସୁରଙ୍ଗ ଧ୍ୱଜା ॥
ବିରହୀମାନଙ୍କୁ ଦେବ ଏ ସଜା ।
ବଜାଇଲାଣି ହେ ବୀରବାଜା ॥
ଦେଖ ଦେଖ ଅହେ  ନାଚୁଅଛାଜି !
ମଧୁମଙ୍ଗଳର ନେଇ ସଙ୍ଗତି ॥

(ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କରି ନାନା ଭଙ୍ଗୀ ଦେଖାଇବା)

ଶ୍ରୀକୃଷ୍ଣ—ବନ୍ଧୁ ! ତମର ଗୀତଟି ମୋତେ ବଡ଼ ଭଲ ଲାଗିଲା । ତେବେ ଆଜ ଗୋଟିଏ ଗୀତ ଗାଅ, ମୁଁ ବଂଶୀ ବଜାଇବ ।

ମଧୁ—ସଖା ! ଗୀତ ଶୁଣିବାକୁ ଇଚ୍ଛା ହେଉଛି ? ହା ! ହା ! ହା ! ହା ! ହା ! ରସିକଚନ୍ଦ୍ର ଚୂଡ଼ାମଣି କି ନା ! ସେଇଥି ପେଇଁ ସଙ୍ଗୀତ ଗୀତକୁ ରସିଛ, ନୁହେଁ ?

## ଗୀତ

ଅରେ ବାଃ ରେ ଅମର କହ୍ନାଇଁ !
(ସବେ) ଗୋପୀକାଙ୍କୁ ତ ନେଲୁ ମନାଇଁ ॥
କଥା ଅଳପ ଖନାଇଁ ଖନାଇଁ ।
କେତେ ପରିହାସ ଜାଣୁ ବନାଇଁ ॥
ଭଲ କହିଲୁ ରେ ସଙ୍ଗୀ ଦନାଇଁ ।
ନଈ ଘାଟେ ଥାଉ କେଣେ ଅନାଇଁ ?
ବାଃ ବାଃ, ତୋ ପରି ଯଦି ରସିକ ଏ ଗୋପରେ ନ ଥାନ୍ତା,
ଅଜ କିଏ କହନ୍ତା ଏପରି ଯେନାଇଁ ?
ତୋର ଶିଖୀ ଚୂଳେ ମଲ୍ଲୀ ଝାଳୁଅ ।
(ତୁ) ଏ ଜଗତକୁ କଲୁ ବାଇଆ ॥
ସଇ ! ତୋଠେଇଁ ଏତିକି ମାୟା ।
ଥିକେ ମୋଠେଇଁ ନ କଲୁ ଦୟା ॥
ତୁ ମୋର କାୟା, ମୁଁ ତୋର ଛାୟା ।
ତୁ ଯେତେବେଳେ ଏ କଦମ୍ବ ମୂଳରେ ରହି—
ବଂଶୀଟି ଭୁଇଁ କରି ଫୁଙ୍କି ଦେଉ,
ମୁଁ ତେତେବେଳେ ନାଚୁଥାଏଁ ତା ତା ଥେୟା,
ତା ତା ଥେୟା, ତା ତା ଥେୟା ॥
ବାଃ ବା ରେ ପରାଣସଙ୍ଗିଆ ।
ମୁହିଁ ଜାଣିଛି ତୁ ବଡ଼ ରଙ୍ଗିଆ ॥

ତୁ ତ ନିତ ନୂଆ ନୂଆ ବଙ୍ଗିଆ ।
ଘାଟ ବାଟଜଗା ଦାନଭଙ୍ଗିଆ ॥
ନବ-ତମାଳ-ଶ୍ୟାମଳ ଅଙ୍ଗିଆ ।
ବୃନ୍ଦାବନର ମତ୍ତ ମାତଙ୍ଗିଆ ॥
ଭାଇ ! ସତ କହୁଛି ? ମୋ ସଙ୍ଗୀତ ତ ଶୁଣିଲ;
ଏଡ଼ କାହିଁକି ହେଉଛ ଚଙ୍ଗଚଙ୍ଗିଆ ?

ଓଃ ଜାଣିଲି ଜାଣିଲି ( ରହସ୍ୟ ଛଳରେ ମୁଖ ଢାଙ୍କି ବସିଲେ )

ଶ୍ରୀକୃଷ୍ଣ—ସଖା ! ଏ ରହସ୍ୟ ଥାଉ, ମୋ ବଂଶୀସ୍ୱନ ଶୁଣ ।

ମଧୁ—ଅଚ୍ଛା ବଜାଅ ବଜାଅ, ଅମ୍ଭେ ଠିକ୍‌ଏ ଶୁଣୁଁ ।

ଶ୍ରୀକୃଷ୍ଣ—( ବଂଶୀ ବାଦନ କଲେ )

ମଧୁ—( ବଂଶୀ ସ୍ୱନର ତାନମାନ ସଙ୍ଗେ ନୃତ୍ୟ କଲେ )

ନେପଥ୍ୟେ—( ମୁଗ୍ଧାକନ୍ୟାଗଣ )

## ଗୀତ

ବଂଶୀ ବାଜେ ଗୋ,  ବଂଶୀ ବାଜେ ଗୋ,
ମଧୁର ମଧୁର ବୃନ୍ଦାବନେ ।
ତରୁ ଲତା ଶୁଷ୍କ ଥିଲେ,  ନବ ପଲ୍ଲବ ଧଇଲେ,
ମଦନ ମୋହନ ବେଣୁସ୍ୱନେ ଗୋ । ୧ ।

ଶ୍ରୀକୃଷ୍ଣ—( ଅଙ୍ଗ ପୁଲକିତ ହେବା ଓ ସେହି ଦିଗକୁ ମନ୍ଦ ହାସରେ ଗୃହିଁବା )

ମଧୁ—ସଖା ! ଏ ବଂଶୀସ୍ୱନ ତ ଅଉ ବାକି ରଖିବ ନାହିଁ—ଦେଖୁଛ ,

ହେଇ, ଶୁଣ ଶୁଣ, ନୂତନା ଗୋପୀମାନେ
କପଟ ଭିକ୍ଷୁକ ହୋଇ ଦଉଡ଼ିଲେଣି ।
ଏ ଢଙ୍ଗ କଅଣ କମ ଢଙ୍ଗ ?
ଏଥର ବଂଶୀଟିକି ଭଲ କରି ଫୁଙ୍କ ।
ଅହେ ଯୁବତୀରଙ୍କ ! ଅମ୍ଭେ ଖସିଲୁ ଦେଖ ।

(ପ୍ରସ୍ଥାନ)

ଶ୍ରୀକୃଷ୍ଣ—(ସ୍ୱଗତଃ) ମୁଁ ଯାଉଛି, ଏହି ତମାଳ ମୂଳରେ ଲୁଚି ରହି ଏ ମୁଗ୍ଧାକନ୍ୟାମାନଙ୍କ ରଙ୍ଗ ରହସ୍ୟ ଦେଖିବି ।

(ପ୍ରସ୍ଥାନ)

(ମୁଗ୍ଧାକନ୍ୟାଗଣ ଗୀତ ଗାଇ ଗାଇ ନାଚି ନାଚି ପ୍ରବେଶ)

## ଗୀତ

ବାଜୁଛି ଗୋ ମୋହନ-ବଂଶୀ ।
ଆସ ଦେଖିଯିବା ସଖୀ ! ଗୋପପୁର ଶଶୀ । ଘୋଷା ।
ମଧୁର ସ୍ୱନ ପଞ୍ଚମେ ଆସୁଅଛି ଭାସି ।
ନେସ ଥନ ଥନ ମନ ହେଉଛି ଉଦାସୀ । ୧ ।
ଛନ୍ଦା ଚରଣ ଅମ୍ବର ଫନ୍ଦା ଗୋ ସୁହାସୀ ।
ବନ୍ଧା ଦେଇ ପରାଣକୁ ହୋଇବା ଗୋ ଦାସୀ । ୨ ।

ଶ୍ରୀକୃଷ୍ଣ—(ନେପଥ୍ୟରୁ ହସି ହସି) ମୁଗ୍ଧେ ! ମୁଁ ଜାଣି ପାରୁଛି, ଭ୍ରମର ବଡ଼ ଭାଗ୍ୟବାନ ।

[illegible]—କପଟ ?

ଶ୍ରୀକୃଷ୍ଣ—ଭ୍ରମର ସିନା ନଅଳୀ ପାଶକୁ ଯାଏ,

ନାକେ ନାକେ ନାଅଳୀ ଯଦ ଭ୍ରମର ପାଖକୁ ଅସେ,
ତେବେ ଏ ଭାଗ୍ୟରୁ ବଳି ଭାଗ୍ୟ ଅଛି ?

ଧନ୍ୟା—ଧୃଷ୍ଟ ଲମ୍ପଟ ! ଲବଣୀଶ୍ରେଷ୍ଠ କଥା କଣ ପାଶୋରି ଦେଲଣି କି ?

## ଗୀତ

ଶୁଣ ଶୁଣ ଶୁଣ ହେ ବସନଚୋର ଶୁଣ ।
ପାଶୋରି ଦେଲଣି କି ଲବଣୀ ଶ୍ରେଷ୍ଠ ଗୁଣ ?
ଭୁଲିଗଲ, ମନ ଭୁଲିଗଲ,
ଲବଣୀ ଶ୍ରେଷ୍ଠ କଥା କି ଭୁଲି ଗଲ ? । ୧ ।
କେଉଁଦିନ ଶିଖିଲ ଏ ନବରଙ୍ଗ ଭଙ୍ଗୀ ।
ଏ ଚାପରା ଛାଡ଼ିଯିବ, କେଡ଼େ ଅନୁରାଗୀ ॥
ସବୁ ଛାଡ଼ିଯିବ । ଏ ଚାପରା ଭଙ୍ଗୀଯାକ ସବୁ ଛାଡ଼ିଯିବ । ୨ ।
ଅମ୍ଭ ମନ ଧନ କାହିଁପାଇଁ ଶ୍ରେଷ୍ଠ ବଳ ?
ଯୋଗେ ଧରା ପଡ଼ିଛ ହେ ଲମ୍ପଟ ଛଇଳ !
ଧରା ପଡ଼ିଛଟି । ଚଉଚୋର (ଏତେଦିନେ) ଧରା ପଡ଼ିଛଟି । ୩ ।
ଗୁହାରି କରନ୍ତୁ ଅମ୍ଭେ ମଦନରାଜାକୁ ।
କେ ଜାଣି କି ଦଣ୍ଡ ଦେବ ବଗୁର ମନକୁ ॥
ଜଣା ପଡ଼ୁଛି ? କାମରାଜାର ଦଣ୍ଡ ଜଣା ପଡ଼ୁଛି ? । ୪ ।
(ତାର) ଚପରାଶି ମତ୍ତ ପିକ ଡାକେ ଘନ ଘନ ।
ନ ପଳାଇଲେ ହେ ବନ୍ଧୁ ! ହୋଇବ ବନ୍ଧନ ॥

ବାନ୍ଧି ଘେନିଯିବ ।
ମଉପିକ ଦୂତ ହୋଇ, ବାନ୍ଧି ଘେନିଯିବ । ୫ ।
ଉପରୋଧ ତଳେ ସହୁ ! ନ କର ଏହାଙ୍କୁ !
ବାନ୍ଧ ବାହୁପାଶେ ନେବା ରଜାର ପାଶକୁ !
କେବେ ନ ଛାଡ଼ିବା ।
ନାଗରବରଙ୍କୁ ନ ଛାଡ଼ିବା ।
କାମରଜା ପାଶେ ବାନ୍ଧି ନେବା । କେବେ ନ ଛାଡ଼ିବା । ୬ ।

( ଗୁରବଦଗରୁ ବେଢ଼ି ଶ୍ରୀକୃଷ୍ଣଙ୍କୁ ଟାଣି ଧରିବା ଅଭିନୟ )

ଶ୍ରୀକୃଷ୍ଣ—( ମନ୍ଦହାସରେ ) ମୂର୍ଖେ ! ଦୋଷୀ ପ୍ରଜା ଯଦି ହାକିମ ହୋଇ ନିଜ ଦୋଷ ମାନିଯାଏ, ତେବେ ରଜା କଣ ତାକୁ ଦଣ୍ଡ ଦିଏ ? କଥାରେ ଅଛି ପରା, ହାକିମକୁ ମୁଣ୍ଡକାଟ ଛାଡ଼ ।

ଧନ୍ୟା—(ସଖୀଙ୍କ ପ୍ରତି) ସଖି ! ଇଏ ତ ନିଜଦୋଷ ମାନି ଯାଉଛନ୍ତି, ଆଉ ଦଣ୍ଡଦେବା କଅଣମ ? ଏବେ ଆସ, ଗୀତ ଗାଇ ଗାଇ ଏ ବନଫୁଲ ଗୁଣ୍ଠିକ ବନବିହାରୀଙ୍କି ସଜାଇ ଦେବା ।

ସମସ୍ତେ—( ଗୀତ ଗାଇ ଫୁଲହାରରେ ଶ୍ରୀକୃଷ୍ଣଙ୍କୁ ମଣ୍ଡିବା ଅଭିନୟ )

## ଗୀତ

ବନ ଫୁଲହାରେ,          ବନବିହାରୀଙ୍କି,
ବନବେଶେ ସାଜ ଦିଅ ଗୋ ।
ନୀଳ କଳେବର,          ବଦନ ସୁନ୍ଦର,
ଅଧରୁ ଅମୃତ ପିଅ ଗୋ । ଘୋଷା ।

ଗଳାରେ ଦିଅ ଓଗୋ ବଉଳୀ ମାଳ,
ଅଙ୍ଗେ ଦିଅ ଚୂଆ ଚନ୍ଦନ ବୋଳ,
ଚଳ ଚଳ ବନମାଳୀଙ୍କ ସଙ୍ଗରେ
ବସନ୍ତ ଉତ୍ସବ ଗାଅ ଗୋ । ୧ ।
ବାଙ୍କଚୂଳେ ଖଞ୍ଜ ମଲ୍ଲି ମାଳକୁ,
ମିଶାଇ ସଖି ! କେତକୀ ଦଳକୁ,
ସେବତୀ ଫୁଲରେ ମକର କୁଣ୍ଡଳ
ଯୁଗଳ କର୍ଣ୍ଣେ ଦିଆଅ ଗୋ । ୨ ।

(ଗୋପୀମାନେ ଆନନ୍ଦରେ ଶ୍ରୀକୃଷ୍ଣଙ୍କୁ ଫୁଲରେ ସୁବେଶ କରିବା ଅଭିନୟ)

ଲଳିତା ପ୍ରବେଶ

ଲଳିତା – (ସ୍ୱଗତଃ) ଆଜ ପ୍ରେମମୟୀ ବୃଷଭାନୁଜେମାଙ୍କ ଆଦେଶରେ ଏ ବୃନ୍ଦାବନକୁ ଫୁଲ ତୋଳି ଆସିଥିଲି, କିନ୍ତୁ ଭଲ କଥାଟିଏ ତ ଦେଖିଲିଣି ! ଲୁଚି ରହି ଏମାନଙ୍କ ରଙ୍ଗ-ରହସ୍ୟ ଆଜ ଟିକିଏ ଦେଖେଁ । ( ଲୁଚିବାକୁ ପ୍ରସ୍ଥାନ )

ଚନ୍ଦ୍ରା—ନାଗର ! ଆସ, ଏଇ ଲବଙ୍ଗଲତା-କୁଞ୍ଜ-ଅଗଣାରେ ନାଚିବା ।

ଶ୍ରୀକୃଷ୍ଣ—ହେଉ, ଭଲକଥା ।

( ସମସ୍ତେ ମଧୁର ନୃତ୍ୟରେ ମଗ୍ନ ହେଲେ )

ଲଳିତା—( ଲତାଗହଳରୁ ବାହାରି କ୍ରୋଧରେ ) ଲମ୍ପଟ ! ତୁମ୍ଭର ଏହି ଆଚରଣ ? ତୁମ୍ଭର ଏହି ବ୍ୟବହାର ? ତୁମ୍ଭର

ଏହି ବ୍ରହ୍ମଚର୍ଯ୍ୟ ପ୍ରକୃତବ୍ରତ (ଭୂରୁ କୁଞ୍ଚିତ କରି) ହଉ ଥାଅ, ଥାଅ; ମୁଁ ଯାଉଚି, ଏହିକ୍ଷଣି ଅମ କଣେଷ୍ଠଙ୍କ ଅଗରେ ତମର ଏ ନବରଙ୍ଗ ଯାକ ସବୁ କହୁଚି ଯେ ।

(ବେଗେ ପ୍ରସ୍ଥାନ)

(ଶ୍ରୀକୃଷ୍ଣ ଓ ନୃତ୍ୟାକନ୍ୟାଗଣ ନୃତ୍ୟରେ ଅବେଶ)

ପଛପରିବର୍ତ୍ତନ



## ପ୍ରଥମ ଅଙ୍କ

### ପଞ୍ଚମ ଦୃଶ୍ୟ

କୁସୁମିତ ବନପଥ

(ତର ତର ହୋଇ ଲଳିତା ପ୍ରବେଶ)

ଲଳିତା—(ଯାଉ ଯାଉ ସ୍ୱଗତଃ) ମୋ ପ୍ରିୟ ସଖୀ ରାଧା ସହିତ ଯଦି ଏତେ କୁଟକପଟ ଚଳେବେ ଅଉ ଏ ବ୍ରଜରେ ତମର କା'ଠାରେ ବିଶ୍ୱାସ ଥିବ ? ଏବେ ଜଣାଗଲା, ତମେ ଜଣେ ଦଗାଦିଆ ଖଣ୍ଡ । ଅଚ୍ଛା ଥାଅ, ଥାଅ, ମୁଁ ଇତି ମଧ୍ୟରେ କଅଣ କରୁଚି ଦେଖ ।

(ଚଞ୍ଚଳ ଗତିରେ ପ୍ରସ୍ଥାନ)

ପଛ ପରିବର୍ତ୍ତନ



# ପ୍ରଥମ ଅଙ୍କ

## ଷଷ୍ଠ ଦୃଶ୍ୟ

### ଶ୍ରୀମତୀଙ୍କ ପୁଷ୍ପ ଉଦ୍ୟାନ

( ଶ୍ରୀରାଧା ବିଶାଖା ପ୍ରବେଶ )

ରାଧା—( ଆନନ୍ଦମନେ ) ସଖି ବିଶାଖେ ! ଏ ବସନ୍ତ ସମୟରେ ଫୁଲଗୁଡ଼ିକ ଫୁଟିଥିବାରୁ ଗଛଟିମାନ କି ସୁନ୍ଦର ଦିଶୁଛି !

ବିଶାଖା—ରାଧେ ! ଗଛଟିମାନ ସିନା ସୁନ୍ଦର ଦିଶୁଛନ୍ତି, ଫୁଲଗୁଡ଼ିକ ଯେ ମୋ ଅଧିକ ସୁନ୍ଦର ଦିଶୁନାହାନ୍ତି ।

ରାଧା—କାହିଁକି ସଖି ?

ବିଶାଖା—ଫୁଲରେ ଭ୍ରମର ବସି ନ ଥିବାରୁ ।

ରାଧା—ବିଶାଖେ ! ଦେଖିଲଣି ? ଏ ମାଧବୀ ଫୁଲରେ କି ସୁନ୍ଦର ଭ୍ରମରଟିଏ ବସି ମଧୁ ପାନ କରୁଛି !

ବିଶାଖା—ରାଧେ ! ମାଧବୀକି ଭ୍ରମର ବଡ଼ ଭଲ ପାଏ । ସଖି ! ଦେଖୁଛ ତ, ଏତେ ଭଲ ଫୁଲ ଫୁଟିଛି; କାହିଁକି ତେବେ ମାଧବୀ ଫୁଲକୁ ଭ୍ରମର ଛାଡ଼ି ପାରୁନାହିଁ ?

ରାଧା—( ମାଧବୀ ଲତାକୁ ଏକାଗ୍ରମନରେ ଚାହିଁ ରହିଲେ )

ବିଶାଖା—ରାଧେ ! ତେମେ ମାଧବୀ ଫୁଲକୁ କାହିଁକି ଏତେ ଅନେଇ ରହିଚ କି ଗୋ ?

ରାଧା—( ଉତ୍କଣ୍ଠାରେ ) ସଖି ! ମୋର ମାଧବ ମନେ ପଡ଼ୁଛନ୍ତି । ଆହା ! ତାଙ୍କ ଚରଣ ଚିହ୍ନ ତ ଚୂରଅଡ଼େ ଦିଶି ଯାଉଛି ।

## ଗୀତ

ମାଧବୀ ଫୁଲକୁ　　　ଦେଖି ଗୋ ବିଶାଖେ,
ମନେ ପଡୁଛନ୍ତି ମାଧବ ।
(ତାଙ୍କ) ଚରଣ ଚିହ୍ନ　　　ଗୃହଅଙ୍ଗେ ଦିଶୁଛି,
କିଏ ତାଙ୍କୁ ଆଣିଦେବ ଗୋ ।
ଅଗୋ ପରାଣ ସଙ୍ଗିନି ।
ହୃଦ-ଚନ୍ଦନ ମୋ ଚିନ୍ତାମଣି ଗୋ । ୧ ।

ଶ୍ୟାମ ଅଙ୍ଗ ଗନ୍ଧ　　　ପରି ମନ୍ଦ ମନ୍ଦ,
ମଳୟ ସଙ୍ଗରେ ବହେ ଗୋ ।
ଗୁଣୁ ଗୁଣୁ ହୋଇ　　　ଚଞ୍ଚୁ ଅସିବାର,
ମଧୁକର କାନେ କହେ ଗୋ ।
ଘନ ବରନ ମୂରତି,
ଗୃହଅଙ୍ଗେ ଦିଶି ଯାଉଛନ୍ତି ଗୋ । ୨ ।

ଚନ୍ଦ୍ରାର୍ଦ୍ଧ କଳଶ—　　　ଧ୍ୱଜ ବଜ୍ରାଙ୍କୁଶ
ଚିହ୍ନମାନ ବିରାଜୁଛି ଗୋ ।
ସୁରଙ୍ଗ କମଳ　　　ଛବିକି ଦେଖିଲେ,
ଅଙ୍ଗେ ପୁଲକ ପୂରୁଛି ଗୋ ।
ଅଗୋ ପରାଣ ସଙ୍ଗିନି !
ମୋତେ କିଏ ତାଙ୍କୁ ଦେବ ଆଣି ଗୋ ? । ୩ ।

ବିଶାଖା—

## ଗୀତ

ବିଶ୍ୱ ଜଗତକୁ, କୃଷ୍ଣମୟ ଦେଖି,
ସବୁ ସୁଖ ଗଲି ଭୁଲି ଗୋ !
ହୃଦୟ ଫଟାଇ, ଅକୁଳେ କାନ୍ଦୁଛୁ,
'ହା କୃଷ୍ଣ, ହା କୃଷ୍ଣ' ବୋଲି ଗୋ !
କୃଷ୍ଣ ଗତ ପ୍ରାଣା ଧନି ! ; କୃଷ୍ଣ ମୋହିନୀ କୃଷ୍ଣ ଭାବିନୀ ଗୋ । ୧ ।

କୃଷ୍ଣ ପ୍ରେମମୟୀ, ଶ୍ରୀ କିଶୋରୀ ରାଇ,
କୃଷ୍ଣ ବାସ ପରିଧାନୀ ଗୋ !
କୃଷ୍ଣ ବିରହରେ, ଉନ୍ମାଦିନୀ ହୋଇ,
ହରୁଛୁ ଦିବା ରଜନୀ ଗୋ !
କୃଷ୍ଣ ଗୃମର କୁନ୍ତଳା !; କୃଷ୍ଣ କୃଷ୍ଣ କରି ଜପାମାଳା ଗୋ । ୨ ।

ଏକା କୃଷ୍ଣ ଧ୍ୟାନେ, ଢଳୁଛୁ ଅଙ୍ଗନେ;
ମୋ କୃଷ୍ଣ କାହାନ୍ତି କହି ଗୋ !
ବୃନ୍ଦାବନେ ତରୁ,- ଲତାଙ୍କୁ ପଗ୍ଟରୁଛୁ,
ହୋଇଣି କେତେ ବିନୟୀ ଗୋ !
ନେତ୍ର କରି ଥନ ଥନ; ମୁଖେ ହାଇ ଅସେ ଘନ ଘନ ଗୋ । ୩ ।

ଧନି ! କାତର ହୁଅନା, ତୋ ପ୍ରାଣବନ୍ଧୁଙ୍କୁ ଅବଶ୍ୟ ପାଇବୁ ।
ରାଧା—( ଭାବାବେଶରେ ହର୍ଷବଦନେ ରହିଲେ )

ଲଳିତା ପ୍ରବେଶ

ବିଶାଖା—ରାଧେ ! ଏଇ ଦେଖ; ଲଳିତା ସଖୀ ଆସିଲେଣି ।

ରାଧା—( ତେଣେ ଚାହିଁ ଦରହାସରେ ମୁଖ ତଳକୁ କରି ଲାଜ ଢଳପର ରହିଲେ )

ଲଳିତା—( ଛଳ ଭଙ୍ଗୀରେ ) ରାଧେ ! ଆଜି ତ ଭାରି ଆନନ୍ଦରେ ଭାସୁଚ ?

ରାଧା—ହଁ, କି ହେବ ନାହିଁ କାହିଁକି ? ଆମ ବଗିଚାରେ ଫୁଲ ନ ଥିଲା ପରି ବୃନ୍ଦାବନକୁ ଫୁଲ ତୋଳି ଯାଇ ଏତେବେଳକୁ ଦେଖା ଦେଉଚ କି ନା ?

ଲଳିତା—ରାଧେ ! ମୁଁ ତମର ଗୋଟିଏ ଶୁଭ ଖବର ଆଣିଚି ମ, ଶୁଣିବ ?

ରାଧା—( ଲାଜ ଲାଜ ହୋଇ ) କଅଣ କହୁନାଅଁ ?

ଲଳିତା—ମୋତେ ଯେବେ କିଛି ପୁରସ୍କାର ଦେବ, ତେବେ କହିବି ।

ରାଧା—(ମଲ୍ଲୀଫୁଲହାର ନିଜ ଗଳାରୁ ଆଣି ଲଳିତାଙ୍କ ଗଳାରେ ଦେଲେ)

ଲଳିତା—( ହସି ହସି କହିଲେ )

"ମାଆ ଲୋ ମଲି,
ମଲ୍ଲୀ ଫୁଲହାର ଆଜି ପାଇଲି"

ବିଶାଖା—ଫୁଲ ହାର ତ ପୁରସ୍କାର ପାଇଲ, ଏଥର କହ ।

ଲଳିତା—କହୁଚି ଶୁଣ ।

## ଗୀତ

ଲଳିତ ଲବଙ୍ଗଲତା  ମୃଦୁ ପରଶୀଳନତା
କୋମଳ ମଳୟ ମନ୍ଦାନିଳେ ।
ମତ୍ତଭୃଙ୍ଗ ମଧୁପାନେ  ନିକୁଞ୍ଜ-କୁଟୀର ବନେ
କୂଜନ୍ତି ପ୍ରମତ୍ତ ପିକକୁଳେ ଗୋ ।
ହରି ବିହରେ,
ସରସ ବସନ୍ତକାଳେ ବନେ ।
ନୃତ୍ୟନ୍ତି ଯୁବତୀଜନେ  ଲମ୍ପଟ ଧୀଠ ମୋହନେ,
ବିରହୀ ମାରଣେ ସାବଧାନେ ଗୋ । ୧ ।

ବିଶାଖା—ଫୁଲହାରଟି ପୁରସ୍କାର ପାଇ ବେଶ୍ ଖବରଟିଏ ଦେଲ ତ !

ରାଧା—ଲଳିତେ ! ଏ କଥା କଣ ସତ ? (ବିକଳମନେ) ସଖି !
ଚାଲିଲ ଦେଖି, ମୁଁ ଲତା ଝାଡ଼ରେ ରହି ଶ୍ରୀଚନ୍ଦ୍ରାମଣିଙ୍କର ସେଇ ଶ୍ରେଷ୍ଠ ପ୍ରୀତି ଦେଖିବି ।

ଲଳିତା—ତେବେ ଶୀଘ୍ର ଆସ, ମୋ କଥା ସତ କି ମିଛ ଦେଖିବ ।

( ଶ୍ରୀରାଧା, ଲଳିତା, ବିଶାଖାଙ୍କ ପ୍ରସ୍ଥାନ )

ପଟ୍ଟ ପରିବର୍ତ୍ତନ



## ପ୍ରଥମ ଅଙ୍କ

### ସପ୍ତମ ଦୃଶ୍ୟ

### ବେତଶୀ କୁଞ୍ଜ

( ଶ୍ରୀକୃଷ୍ଣ ଓ ମୁଗଧା କନ୍ୟାମାନଙ୍କ ପ୍ରେମ ଖେଳ )

ମୁଗ୍ଧାଗଣ—( ସମାନ ସ୍ୱରେ ଗୀତ ଗାଉଥିବା )

## ଗୀତ

ଦେଖ ସୁନ୍ଦର ଏ,　　　　　　　　ନବୀନ ନାଟୁଆ,
ଛନ୍ଦା ଚରଣ ମୂରତି ।
ବନ୍ଦାପନା କର,　　　　　　　　ମନ୍ଦାର ଅଧରଙ୍କୁ,
ପଛକୁ ପକାଇ ସବୁ ନିନ୍ଦା ସ୍ତୁତି ।
ନାଚ ଗୋ ତାଳି ତାଳି,　　　　　ବଜାଇ କରତାଳି,
ଆନନ୍ଦେ ସର୍ବ ଆଳୀ,　　　　　ଦିଅ ଗୋ ହୁଳହୁଳି,
ଏ ବୃନ୍ଦାବନ ସ୍ଥଳୀ,　　　　　ପ୍ରେମେ ପଡ଼ୁ ଉଚ୍ଛୁଳି । ୧ ।

ଧନ୍ୟା—ବୃନ୍ଦାବନଚନ୍ଦ୍ର ! ଏ ଦାସୀମାନଙ୍କର ସେବା ଘେନାକର ।

## ଗୀତ

ହେ ବୃନ୍ଦାବନ-ମଦନ !
ଅମ୍ଭମାନଙ୍କର ତାମ୍ବୁଲ ଘେନ ହେ,
କରୁଅଛୁ ଏହି ନିବେଦନ, ମୋହନ ହେ । ୧ ।
ଅଗର କର୍ପୂର ଚୂନ, ( ହେ ମୋହନ )
ଦେଇ ଭାଙ୍ଗିଅଛୁ କରି ଯତନ ହେ,
ଭୁଞ୍ଜ, ତୋଷ ହେଉ ଅମ୍ଭ ମନ, ମୋହନ ହେ । ୨ ।
( ତାମ୍ବୁଲ ଭୁଞ୍ଜାଇ ଦେବା ଅଭିନୟ )

ଶ୍ରୀକୃଷ୍ଣ—କନ୍ୟାଗଣ ! ଆଜି ମୋର ବଡ଼ ଭାଗ୍ୟ ।

ଧନ୍ୟା—ନା, ନା, ଆମର ବଡ଼ ଭାଗ୍ୟ ।

## ଗୀତ

ଗୋକୁଳର ଇନ୍ଦୁ ଅହେ ପରାଣର ବନ୍ଧୁ !
ଚରଣେ ଶରଣ ଗଲୁଁ ଦିଅ କୃପାବିନ୍ଦୁ ।
ଅହେ ଛନ୍ଦାଚରଣ !
ଫୁଲମାଳ ଦେଇ କଲୁଁ ବରଣ ହେ ।
ଏହି ସ୍ନେହ ଥାଉ ।
ଜନମେ ଜନମେ ନାଥ ହେ ( ଏହି ସ୍ନେହ ଥାଉ )
ପତି ହୋଇଥାଅ
( ଅଭାଗିନୀମାନଙ୍କର ପତି ହୋଇ ଥାଅ । )

ଶ୍ରୀକୃଷ୍ଣ—( ହସି ହସି )

## ଗୀତ

ସୁକୁମାରୀ କୁମାରୀ ଗୋ ମୁଗ୍ଧା କନ୍ୟାଗଣ,
ତୁମ୍ଭେ ମୋର, ମୁଁ ତୁମ୍ଭର, ନିଶ୍ଚୟ ଗୋ ଜାଣ ।
ତୁମ୍ଭେ ମୋର, ମୁଁ ତୁମ୍ଭର ।
ସୁକୁମାରୀ କୁମାରୀ ଗୋ (ତୁମ୍ଭେ ମୋର, ମୁଁ ତୁମ୍ଭର)
(ମନୁ ଭୁଲିବ ନାହିଁ) ତୁମ୍ଭମାନଙ୍କର କଣା ମୁହଁ,
(ମନୁ ଭୁଲିବ ନାହିଁ) କହୁଛି ଏ ମୋର ବଂଶୀ ଛୁଇଁ । ୧ ।

( ଶ୍ରୀରାଧା, ଲଳିତା, ବିଶାଖା ପ୍ରବେଶ )

ଲଳିତା—ରାଧେ ! ମୋ କଥା ସତ କି ମିଛ, ହେଇଟି ଦେଖ, କିଭଳି ଲାଗୁଛି ?

ରାଧା—( କ୍ରୋଧରେ ଜରଜର ହୋଇ ) ଲଳିତେ ! ପୂର୍ବେ ମୁର-
ଦୈତ୍ୟଙ୍କୁ ଯେ ବିନାଶ କରିଥିଲେ ସେ କଣ ଏହି ଠିକ ?
ସଖି ! ଏ ଲତାତଳେ ଲୁଚି ରହି ଭଲକରି ଠିକଏ ସ୍ବାଙ୍କ
ରଙ୍ଗରହସ୍ୟ ଦେଖିବା । ( ଲୁଚିଲେ )

ଧନ୍ୟା—ନାଗର ! ଆସ ଅବିର ଖେଳିବା ।

ଶ୍ରୀକୃଷ୍ଣ—ହେଉ ତେବେ ।

ଧନ୍ୟା—

ଗୀତ

ଅବିରତେ ଅବିରତ ଅବିର ଉଡ଼ାଅ ଗୋ ।
ମଦନମୋହନ ଅଙ୍ଗେ ଅଙ୍ଗକୁ ଜଡ଼ାଅ ଗୋ ॥
ଆଗୋ, ଅଙ୍ଗକୁ ଜଡ଼ାଅ ଗୋ । ଘୋଷା ।
ଲଳିତ ବସନ୍ତ ସ୍ୱବେ ପରଶ ଗୋ ପୀତବାସେ ।
ଲଳିତେ ଲଳିତ ଭୁଜେ ଭୁଜକୁ ବେଢ଼ାଅ ଗୋ । ୧ ।

(ଶ୍ରୀରାଧା, ଲଳିତା, ବିଶାଖା ଲତା ଉହାଡ଼ରୁ ବାହାରିଲେ)

ଶ୍ରୀରାଧା—( କ୍ରୋଧରେ )

ଗୀତ

ପୂର୍ବେ ମୁର ଦୈତ୍ୟ,                ଯେ ନାଶିଥିଲେ ଗୋ !
ସେହି କି ଏହି ଲଳିତେ !
ଦେଖ ଗୋ ଦେଖ ଗୋ ସଖି ! (ପୂର୍ବେ ମୁର ଦୈତ୍ୟ)

( ଶ୍ରୀକୃଷ୍ଣ ଚମକି ପଡ଼ି ବଂଶୀ ପକାଇଦେଇ ରହିଗଲେ )

( ମୁଗ୍ଧା କନ୍ୟାଗଣ ଚାହିଁବା ଭାବେ ରହିଗଲେ )।

## ଗୀତାଂଶ

ଏବେ କି ସୁନ୍ଦର,                    ଶୋଭା ପାଉଛନ୍ତି,

କୁମାରୀମାନଙ୍କ ସହିତେ ।

ଦେଖ ଦେଖ ସଖୀ !

ଏ କି ଅଟେ ସେହି ଗିରଟେକା ? । ୧ ।

ଚନ୍ଦନ ଚର୍ଚ୍ଚିତ-                    ନୀଳ କଳେବର,

ପୀତବାସ ବନମାଳିଆ ।

ଖେଳନ ଚଞ୍ଚଳ,                    ରତନ କୁଣ୍ଡଳ,

ଗଣ୍ଡଯୁଗ ସ୍ପିତଶାଳିଆ ।

ଯେସନ ନବ ବାଳକା ।

ମାତେ ଏ କି ସେହି ଗିରଟେକା । ୨ ।

ପୀନ ପୟୋଧର,                    ଗୋପିନୀମାନଙ୍କର

ଲାଗିଛନ୍ତି ଶ୍ୟାମ ହୃଦେ ।

ମର୍କତ କବାଟେ                    କୁନ୍ଦନ ସମ୍ପୁଟେ,

ଯୋଖିଛି କେ ଜନମାଦେ ॥

ଶ୍ୟାମ ମୁଖ-କମଳ ।

ଦେଖ ବନ୍ଧୁ ବନ୍ଧୁ ଭ୍ରମ ହାଳ; ( ଶ୍ୟାମ ମୁଖ-କମଳ )

ସାକ୍ଷୀ ରହୁଥାଅ ଗୋ !
ମୋର ବଣାଖା ସଙ୍ଗିନୀ ଏବେ, ସାକ୍ଷୀ ରହୁଥାଅ ଗୋ !
ମୋର ଲଳିତା ସଙ୍ଗିନୀ ଏବେ, ସାକ୍ଷୀ ରହୁଥାଅ ଗୋ । ୩ ।

( ଈର୍ଷାପୂର୍ବକ ଗାନ କରୁଥିବା, ଶ୍ରୀକୃଷ୍ଣ ଓ କନ୍ୟାଗଣ
ଚାହିଁବା ହୋଇ ରହୁଥିବା । )

## ପରଦା ପତନ



( ବିରହମାନ ଆରମ୍ଭ )




ପ୍ରଥମ ଦୃଶ୍ୟ

ଅରୁଣ କୁଞ୍ଜ

( ଶ୍ରୀରାଧା, ଲଳିତା, ବିଶାଖା ପ୍ରବେଶ )

ଶ୍ରୀରାଧା—( ବିରହ ଉତ୍କଣ୍ଠାରେ ସଖୀଙ୍କି କହିଲେ )

ଗୀତ

ଏହି ତ ଅରୁଣ କୁଞ୍ଜ ଗୋ, ସଜନି !
ଏହି ତ ଅରୁଣ କୁଞ୍ଜ ଗୋ !
କେତେ ଅପୂରବ, ଦଣ୍ଡେ ନ ଥିବାରୁ
ବରଜ ରସିକରାଜ ଗୋ !
ଅଗୋ ପରାଣ ସଙ୍ଗିନି !
ତାଙ୍କୁ ଅତୁଳ ହୁଏ ଏ ଦେଖି ଗୋ । ୧ ।

ସଖି ଏ ଭ୍ରମର— ମାନଙ୍କ ଝଙ୍କାର—
ନାଦ ବାଜି ମୋ ଶ୍ରବଣେ ଗୋ !
ପରାଣବନ୍ଧୁଙ୍କ ପ୍ରୀତି ମନେ ପଡ଼ି,
ହୃଦ କଲେ ଅନୁକ୍ଷଣେ ଗୋ ।

ଅଗୋ ପରାଣ ସଙ୍ଗିନି !
ଶଶି ଅକୁଳ ହୁଏ ଏ ବେଳ ଗୋ ! ୨ ।

ଟିକି ଡାକ ଶୁଣି ଚକ୍ଷୁଣି ଚାଳଇ,
ମୃଦୁବାଣୀ ପଡ଼େ ମନେ ଗୋ !
ଝିଙ୍କାରି ନିସ୍ବନ, ଘଟେ ହୁଏ ଶ୍ୟାମ—
ନୂପୁର ନାଦ ଯେସନେ ଗୋ !
ଅଗୋ ପରାଣ ସଙ୍ଗିନି !
ଗୋଷ୍ଠ-ଚନ୍ଦ୍ରମା ମୋ ଚନ୍ତାମଣି ଗୋ ! ୩ ।

ଲଳିତା—ରାଧେ ! ସେ ନିର୍ଦ୍ଦୟ ଶଠଙ୍କୁ ମନେ ପକାଅ ନା ।

## ଗୀତ

ଅଗୋ ରାଧେ ସେ ନିର୍ଦ୍ଦୟ ଶଠରେ କି କାମ ।
କର୍ମକୁ ଆଦର ରହ ନ ଧର ତା ନାମ ଗୋ । ୧ ।

ଶ୍ରୀରାଧା—ନିର୍ଦ୍ଦୟ ନୁହନ୍ତି ସେ ତ ଦୟାମୟ ଶ୍ୟାମ ।
ମନ୍ଦ କପାଳକୁ ମୋର ହୋଇଛନ୍ତି ବାମ ଗୋ । ୨ ।

ବିଶାଖା—ଅଗୋ ବିଷାଦିନୀ ଦୁଃଖ ଦୂର କର ମନୁ ।
ଝାଉଁଳ ପଡ଼ୁଛୁ ବେଳୁଁ ବେଳ ସୁନା ତନୁ ଗୋ । ୩ ।

ଲଳିତା—ଦମ୍ଭଧର ଧୀର ସ୍ଥିର ପରାଣ ପିତୁଳି ।
ଆକୁଳିତା ନୁହ ଧନୀ ଗଳା ସୁନାମାଳି ଗୋ । ୨ ।

ଶ୍ରୀରାଧା—ସଖି ! ମୋର ପଞ୍ଚେନ୍ଦ୍ରିୟସବୁ ତାହାଙ୍କ ବଳେ ବଳେ ତାଙ୍କର ଅଙ୍ଗକୁ ଟାଣି ନେଉଛନ୍ତି ? ମୁଁ ତ ଅବଳା; କିପରି ଦମ୍ଭ ଧରିବି ? ହା ଜୀବନବନ୍ଧୁ ! ଦର୍ଶନ ଦିଅ ।

## ଗୀତ

ଅହା ନାଥ ପ୍ରାଣନାଥ          ମୋହନ ମୁରଲୀହାତ
କାହିଁ ଅଛ ଦିଅ ଦରଶନ ।
ଅହେ ମଦନମୋହନ          ସନ୍ତାପେ ହେଲି ଦହନ
ଏବେ ଆସି କର ଆଲିଙ୍ଗନ ହେ ।
ବନ୍ଧୁ ହେ ! ଦେଖାଅ ତୁମ୍ଭର ମୁଖଇନ୍ଦୁ ।
ଦିଅ ଓଷ୍ଠ ସୁଧା ଏକ ବିନ୍ଦୁ ହେ । ୧ ।

ଲଳିତା—ରାଧେ ! ଧୈର୍ଯ୍ୟଧର, ମୁଁ ଏହିକ୍ଷଣି କୁଞ୍ଜବନକୁ ଯାଇ ତୁମ୍ଭ ହାଲଚାଲ ସବୁ ଜଣାଇବି ।

## ଗୀତ

ଚନ୍ଦ୍ରାବଳୀ ସଙ୍ଗେ କେଳି          କରୁଥିଲେ ବନମାଳୀ
ତୁମ୍ଭ ଭୟେ ଗୃହର ପର ହେଲେ ।
ଧୈର୍ଯ୍ୟ ବହୁ ତେଜ ରୋଷ,          କ୍ଷମା କର ତାଙ୍କ ଦୋଷ,
ଗୃହେ ଯାଅ ବଣାଖାର ତୁଲେ ।
(ମୁଁ) ଯାଉଛି, ଯାଉଛି ।

ମୋହନଙ୍କ ନିକଟକୁ ଯାଉଛୁ, ଯାଉଛୁ ।
ସଙ୍କେତ ଆଣିବ ରାଧେ ! ଯାଉଛୁ, ଯାଉଛୁ ।
ରାଇ ବିନୋଦନୀ ଧନୀ ! ଯାଉଛୁ ଯାଉଛୁ । ୧ ।

( ଗାଇ ଗାଇ ପ୍ରସ୍ଥାନ )

ବିଶାଖା—ରାଧେ ! ଲଳିତା ତ ଶ୍ରୀକୃଷ୍ଣଙ୍କ ନିକଟକୁ ଗଲେଣି, ଏବେ ଆସ ଘରକୁ ଯିବା ।

ରାଧା—ଚାଲ ସଖି !                    ( ବିଶାଖା ରାଧା ପ୍ରସ୍ଥାନ )

## ଦ୍ୱିତୀୟ ଅଙ୍କ

### ଦ୍ୱିତୀୟ ଦୃଶ୍ୟ

କାଳିନ୍ଦୀକୂଳ ବନ

( ଶ୍ରୀକୃଷ୍ଣ ଶୋକାକୁଳିତ ଭାବେ ପ୍ରବେଶ )

ଶ୍ରୀକୃଷ୍ଣ—( କରୁଣସ୍ୱରେ ) ରାଧେ ! କେଉଁଠାରେ ଅଛ ? ଏ ଦୀନଜନର ଅପରାଧ କ୍ଷମାକର । ପ୍ରାଣାଧିକେ ! ଆଉ କେତେ ଖୋଜିବି ? ମାଧବୀ କୁଞ୍ଜ, ଅଶୋକ କୁଞ୍ଜ, ବକୁଳ କୁଞ୍ଜ, କେଶର କୁଞ୍ଜ, କଦମ୍ବ କୁଞ୍ଜ ଏହିପରି କେତେ ଖୋଜିଲି, କାହିଁ ? କେଉଁଠାରେ ତ ଦେଖିଲି ନାହିଁ ? ( ବନକୁ ଚାହିଁ ) ତରୁଲତାମାନେ ! ମାନମୟୀ କିଶୋରୀଙ୍କୁ ମୋର ଦେଖିଛ କି ?

# ଗୀତ

କହ କହ ଗୋ ! କହ କହ ଗୋ !
ମୋର ଦୁଃଖ ଦେଖି ଦୟାବହ । ଘୋଷା ।
ବକୁଳ କୁନ୍ଦ ମନ୍ଦାର                ଜାଣିଛ କି ଜନଅର
ସୁକୁମାରୀ ମୋ ଗଜଗାମିନୀ ।
ନାଗଲୀ ମାଧବୀ ମଲ୍ଲୀ                ଦେଖିଛ କି ମୋର ଅଳୀ
ପ୍ରାଣପ୍ରିୟା କନକପିତୁଳୀ ଗୋ । କହ କହ ଗୋ । ୧ ।
ଅଟବୀ କୁନ୍ଦ କରବୀର                ଦେଖିଛ କି ନାରୀବର
ଯାବତ-ବାସିନୀ ବନୋଦରୀ ।
ହୋଇ ତରୁ କଅ                କାହିଁ ଯାଉଛି ମୋ ହୃଦୟ
ନ ଦେଖି ମୋ କଣ୍ଠ-ରତ୍ନମଣି ଗୋ । କହ କହ ଗୋ !
ଏ ସନ୍ତାପ ତାପ ହର                ଦୁଃଖୀଜନେ ଦୟାକର
ଅଗୋ ତରୁ ଲତା ବନ ଗିରି ।
କାହିଁ ମୋ ପରାଣ ଶିରୀ                କାହିଁଅଛି ଶ୍ରୀକିଶୋରୀ

ଇନ୍ଦିରାବନ୍ଦିତା ବୃନ୍ଦାବନେଶ୍ୱରୀ ଗୋ । କହ କହ ଗୋ ! ୩ ।
( ଉତ୍କଣ୍ଠାରେ ) କାହିଁ ? କେହୁ ତ ଉତ୍ତର ଦେଲେ ନାହିଁ ।
ହାୟ ! ମାନିନି ! ମାନିନି ! ! ମାନିନି !!!

( ପ୍ରସ୍ଥାନ ଓ ଯବନିକା )

( ତୁଳସୀ ପ୍ରବେଶ )

ତୁଳସୀ—(ସ୍ୱଗତଃ) ଅହା ! ବୃନ୍ଦାବନଚନ୍ଦ୍ରଙ୍କର ଅଳ୍ପ ଇଏ କି ଦଶା ?
ହେଇ ତ ବନଦେବୀ ବୃନ୍ଦା ଏଇଆଡ଼େ ଅସୁଛନ୍ତି ।

( ବୃନ୍ଦା ସହ ଶ୍ରୀକୃଷ୍ଣଙ୍କ ପ୍ରବେଶ )

ଶ୍ରୀକୃଷ୍ଣ—( କରୁଣସ୍ୱରେ )

## ଗୀତ

ମୋହର କପାଳ ମନ୍ଦ କି କହିବ ବୃନ୍ଦେ ।
ଧନ୍ୟା ଗୁଞ୍ଜ କ୍ରୀଡାକଲି ଧନ୍ୟା କନ୍ୟାବୃନ୍ଦେ ଗୋ ॥
ପିଣ୍ଡ ଯେବେ କରେ ଶ୍ରେଣୀ ପ୍ରାଣ କି ନ ଜାଣେ ।
ଲୁଚି ଦେଖିଲ ମୋ ବନ୍ଧୁ ! ଇର୍ଷାନେନ କୋଣେ ଗୋ ॥
ଅପରାଧ ଡରେ ମୁହିଁ ପାଶକୁ ନ ଗଲି ।
ବନସ୍ତ୍ରୀ ହୋଇ କୋପ ନିବାରି ନ ପାରିଲି ଗୋ ॥
ହତାଦର କଲି ବୃନ୍ଦେ ପଗଣ-ବନ୍ଧୁରେ ।
ଏହି ଦୋଷୁଁ ଭାସୁଛି ମୁଁ ସନ୍ତାପ-ସିନ୍ଧୁରେ ଗୋ ॥

ବୃନ୍ଦା—( ପ୍ରବୋଧି )

## ଗୀତ

ମୁଁ କିସ କରିବି                    ଅହେ ଘନନୀଳ
ଅପେ ତ ଅର୍ଜିଲ ଏହା ହେ ।
ନିଜ ଦୋଷେ ନିଜେ                    ଚନ୍ଦ୍ରା ଅଙ୍କଗଲ
ଦେଖିଲ କନକଦେହା ହେ ।

ଈର୍ଷାବତୀ ମାନିନୀକି ।
ଛାଡ଼ ମୁଁ ଭୁଲିବି ପାରିବ କି ହେ ? । ୧ ।
କି ଭଲ କି ଭଲ, ନାଗର ଛଇଳ,
ତାରେ ମହାଦୁଃଖୀ ଦେଲ ହେ ।
ନଷ୍ଟ ଚନ୍ଦ୍ରାମଣି, ଗୋଷ୍ଠଚନ୍ଦ୍ରମା ମୋ,
ରଷ୍ଟ ଭୃଙ୍ଗ ଦରି ହେଲ ହେ ।
କେଡ଼େ ହରବରେ ବନ୍ଧୁ ।
ପଡ଼ିଗଲଟି ଲବଣ୍ୟ ସିନ୍ଧୁ ହେ ! । ୨ ।
ସେ ରାଜ-ନନ୍ଦନୀ, ମହା ଅଭିମାନୀ,
ଶୁଣିବ କି ମୋ ଦମ୍ଭିନୀ ହେ ।
ପୁଣି ତାଙ୍କ ଭଣିସି ଗୃହଗଣା !
ବସ୍ତୁସ ମୁରଲୀ ପାଣି ହେ ।
ପୁଣି ତା ପ୍ରେମକୁ ଦାଣ୍ଡେ,
ଭୁଣୋ ଉଣି ହେଲଣି ତା ଦଣ୍ଡେ ହେ । ୩ ।
ଶ୍ରୀକୃଷ୍ଣ—( ବୃନ୍ଦାଙ୍କ ହାତ ଧରି )

## ଗୀତ

ପଞ୍ଚବାଣ ଭର ସହିଲି ନାଗର
ଧରି ଜହ୍ନୁଚ୍ଛ ତୋ କର ଗୋ ।
ଦାରିଦ୍ରନିଧି ମୋ କରି-ଗମନାଚ
ତଣ୍ଡ ନ ଗଲି ପାଶର ଗୋ ।

ହରଣୀ ନେତ୍ରୀଙ୍କ ପଦେ ।
ପଙ୍କଜର ଦୋଷ ମାଗ ବୃନ୍ଦେ ଗୋ । ୧ ।
ତରଳ ଯେପର　　　　ଶୋକ-ସରିତରୁ
ହର-ମଧ୍ୟମା ତା କର ଗୋ ।
ଭରଣ ଗରଳ　　　　ନୋହୁଲେ ବନ୍ଧନେ
ଅର ହେଲ ପଞ୍ଚଶର ଗୋ ।
ଥର ଯାଉଛି ମୋ ଛାତି ।
ଧରଣୀରେ ଏକା ସେ ମୋ ଗତି ଗୋ । ୨ ।

ବୃନ୍ଦା—( ସ୍ୱଗତଃ ) ଅହା ! ଏ ବନ ମଧ୍ୟରେ ୟାଙ୍କୁ ମୁଁ କାପର ସାନ୍ତ୍ୱନା ଦେବ ?

( ଅକୂଳରେ ଭାସିହେବା ଅଭିନୟ )

( ଲଳିତା ପ୍ରବେଶ )

ବୃନ୍ଦା—ମୋହନ ! ଦେଖ, ତୁମ୍ଭ ଭାଗ୍ୟକୁ ସଧାର ପ୍ରିୟସଖୀ ଲଳିତା ଅସିଲେଣି ।

ଲଳିତା—( ଆଶ୍ଚର୍ଯ୍ୟରେ ) ବୃନ୍ଦେ ! ଇଏ କଅଣ ?
ରସିକ-ଚନ୍ଦ୍ରମାଙ୍କର ଅଜ୍ଞ ଇଏ କି ଦଶା ? ଅହା !
ବାସି ନୀଳକଇଁଟି ପରି ତ ଶ୍ରୀଅଙ୍ଗ ଶୋଭାହୀନ ଦଶିଗଲାଣି !
ମୁକୁଳିତ କେଶ ଧୂଳି ଧୂସରିତ,
ମସ୍ତକରୁ ମୟୂର ଚୂଡାଟି ଖସିପଡ଼ିଛି,
ଶ୍ରୀହସ୍ତରେ ମୋହନବଂଶୀଟି ନାହିଁ,

ଅହା ! ଏ ଅବସ୍ଥା ଦେଖିଲେ କାହା ହୃଦୟ ସହିବ ?
( ଧୂଳି ଝାଡ଼ିଦେଇ ) ମୋହନ ! ମୋ ପ୍ରିୟସଖୀଙ୍କ
ମାନିନୀ କରିଦେଇ କାହିଁକି ଏତେ ଦୁଃଖ ସହୁଚ ?
ବୃନ୍ଦାବନଚନ୍ଦ୍ର ! ଉଠ ଉଠ, ସଚେତ ହୁଅ ।

ଶ୍ରୀକୃଷ୍ଣ—( ସଚେତ ହୋଇ ଅଶ୍ରୁପୂର୍ଣ୍ଣ ନୟନରେ କହିଲେ )
ଲଳିତେ ! ରକ୍ଷାକର ।

ଲଳିତା—ରାଧାନାଥ ! ଅଜ ଅକୁଳିତ ହୁଅନାହିଁ ! ସ୍ଥିରହୁଅ ।
ତମର ଏ ଅଧୀରତା ଦେଖି ମୋ ଅନ୍ତର ଜଳିଯାଉଚି ।

ଶ୍ରୀକୃଷ୍ଣ—ଲଳିତେ ! ତମ ପ୍ରିୟସଖୀ ସୁଖରେ ଅଛନ୍ତି ତ ?

ଲଳିତା—ମୋହନ ! ରାଧା ଦୁଃଖ ମୁଁ କଅଣ କହିବି ? ତୁମ୍ଭ
ବିରହରେ ସେ ଅଜାନୁ ମୁକୁମାରୀଟି ଯାହା ହେଲାଣି,
ଶୁଣ—

ଗୀତ

ଅହେ ବଂଶୀଧାରୀ　　　　ସ୍ନେହେ ଗଲା ସରି
ତୁମ୍ଭ ନବୀନା କିଶୋରୀ । ଘୋଷା ।
ବଞ୍ଚିବାରେ ତାର　　　　ପାଞ୍ଚ ଉପାୟକୁ
କାଞ୍ଚିତରେ ଶାନ୍ତି ନ ପାଇଲି କର
( ପଦ ) ଝର ଝର ନୟନୁ　　　　ନୀର ବହେ ପୁଣ
କର ନବେଣି ଗଣ୍ଡେ,　　　　ବରସ ଦନୁ ଦନୁ

ପର ହୋଇ ଶାଣିତ—　　　　ଶର ମାରେ ଅତନୁ
କା ଗତ ଅଛି ଗନ୍ନ—　　　　ଗଢର ତବ ଶନୁ
ଅହେ ବଂଶୀଧାରୀ । ୧ ।

ଭାବ ମଣି ଜର　　　　ହାର କଲ ଦୂର,
ନା ବନ୍ଧୁ ଅଙ୍ଗେ ବସନ;
ସାରସାକ୍ଷୀ ମାନ　　　　ଗାର କରଳରେ,
ବାରମ୍ବାର ଝିତରେ କାଟେ ମୋହନ

( ପ୍ରଭୃ ) ଝର ଝର ନୟନୁ　　　　ନୀର ବହେ ମୃତନୁ
କର ନିବେଶି ଚନ୍ଦ୍ରେ,　　　　ବରସ ଦନୁ ଦନୁ
ପର ହୋଇ ଶାଣିତ—　　　　ଶର ମାରେ ଅତନୁ
କା ଗତ ଅଛି ଗଜ—　　　　ଗଢର ତବ ବନୁ
ଅହେ ବଂଶୀଧାରୀ । ୨ ।



ଶ୍ରୀକୃଷ୍ଣ—( ଅକୁଳିତ ଭାବେ ) ଲଳିତେ ! କଅଣ କହୁଚ ?
ପ୍ରାଣେଶ୍ୱରୀ ମୋର ଏପରି ଦଶା ଭୋଗୁଚ ?
ଅହା ! ସଖି ! ଏବେ ଯାଅ, ଈର୍ଷାବତୀ କିଶୋରୀଙ୍କ
ମୋ ଦୁଃଖ ନିବେଦନ କରି ଏହି କୁଞ୍ଜକୁ ଆଣ ।

## ଗୀତ

ଯାଅ ଯାଅ ଗୋ ଲଳିତେ !
ମୋର ବନସ୍ତକୁ ଘେନ ଗତେ ଗୋ । ଘୋଷା ।
ସନ୍ତାପ ଅନଳ ଜଳୁଛି ପ୍ରବଳ
ଚଳି ନ ପାରୁଛି ପଦେ ଗୋ,
ଧନୀ ପାଶେ ଯାଇଁ, ମୋ ଦୁଃଖ ଜଣାଅ
ଭାସୁଛି ବହର-ନଦେ ଗୋ ।
ମାଗୁଅଛି କରଧର ।
ଅଣାଦିଅ ମୋ ପ୍ରାଣ-ଈଶ୍ୱରୀ ଗୋ । ୧ ।
ଛଡ଼ିଅଛି ମୁହିଁ ଯେତେକ ଅପରାଧ
ସେ ସିନା କରିବ କ୍ଷମା ଗୋ ।
କ୍ଷମା-ନିଧାନୀ ମୋ ପରମ ଦୟାଳୁ
ଶରଣ-ବତ୍ସଳ-ବାନା ଗୋ ।
କ୍ଷମା କରିଇ ମୋ ଦୋଷ ।
ବେଗେ ଏହୁ କୁଞ୍ଜେ ଘେନି ଆସ ଗୋ । ୨ ।

ଲଳିତା—ମୋହନ ! ତେବେ ମୁଁ ଯାଉଛି, ମୋ ପ୍ରିୟସଖୀ କିଶୋରୀଙ୍କ ଅଭିସାରିଣୀ କରାଇବ । ( ପ୍ରସ୍ଥାନ )

ବୃନ୍ଦା—ଗୋକୁଳଚନ୍ଦ୍ରମା ! ଆସ, ଏ ଧୀର ସମୀରରେ ଟିକିଏ ବୁଲି ମନ ପ୍ରାଣ ଶୀତଳ କରିବା ।

ଶ୍ରୀକୃଷ୍ଣ—( ଅବଶ ହୋଇ ବୃନ୍ଦାଙ୍କ ସଙ୍ଗ ଯାଉ ଯାଉ ଭାବାବେଶରେ )

## ଗୀତ

କାନନେ ରାଧା ଭବନେ ରାଧା ଗଗନେ ରାଧା ।
ଭୋଜନେ ରାଧା ଶୟନେ ରାଧା ସ୍ୱପନେ ରାଧା ॥
ଗାୟନେ ରାଧା ବାୟନେ ରାଧା ଧ୍ୟାୟନେ ରାଧା ।
ଗଗନେ ରାଧା ପବନେ ରାଧା ବନ୍ଧନେ ରାଧା ॥
ନୟନେ ରାଧା ଭଜନେ ରାଧା ପୂଜନେ ରାଧା ।
ଅର୍ଚ୍ଚନେ ରାଧା ବନ୍ଦନେ ରାଧା ସ୍ମରଣେ ରାଧା ॥
ଶ୍ରବଣେ ରାଧା କୀର୍ତ୍ତନେ ରାଧା ସେବନେ ରାଧା ।
ଜୀବନେ ରାଧା ମରଣେ ରାଧା ତାରଣେ ରାଧା ॥

( ଗାଇ ଗାଇ ବୃନ୍ଦାଙ୍କସହ ପ୍ରସ୍ଥାନ )

## ଦ୍ୱିତୀୟ ଅଙ୍କ

### ତୃତୀୟ ଦୃଶ୍ୟ

ଶ୍ରୀରାଧାଙ୍କ ଶୟନ ମନ୍ଦିର

( ଶ୍ରୀରାଧା, ବିଶାଖା, ଚିତ୍ରା, ଚମ୍ପକଲତା, ଇନ୍ଦୁରେଖା, ତୁଙ୍ଗବିଦ୍ୟା, ସୁଦେବୀ, ରଙ୍ଗଦେବୀ ବସିଥିବା )

ଶ୍ରୀରାଧା—ସଖି ଏ ଗୋ ! କି ଉପାୟ କରିବ ?
ଜୀବନବଲ୍ଲଭଙ୍କ ଶୁଭ ସମ୍ବାଦ ନେଇ ଲଳିତା ତ ଏ ପର୍ଯ୍ୟନ୍ତ ଆସିଲେ ନାହିଁ ।

ଶୋଖୀ—ରାଧେ ! କଥା ଅଛୁ, ବଲମ୍ୱେ କାର୍ଯ୍ୟସିଦ୍ଧି ।
ବୋଧ ହେଉଛୁ ଲଳିତା ସର୍ବ ଶୁଭରେ ଅସୁଛନ୍ତି ।

ଶ୍ରୀରାଧା—ସଖି ! ସତେ ଏ ଅଭାଗିନୀର ଦଶା ଫେରବ ?

ଶୋଖୀ—ରାଧେ ! ନିଶ୍ଚେ ଚନ୍ଦ୍ରାମଣି ଏ ଚନ୍ଦ୍ରା ହେବବେ । କେଣେ ମନ-
ଦୁଃଖ କର ନାହିଁ, ଏ ବୃଥା ଭାବନା ଛାଡ ।

ଗୀତ

ନ କର ଭାବନା ରାଧେ ! ନ କର ଭାବନା ।
( ଝୁମ୍ପ ) ପ୍ରାଣବନ୍ଧୁ ନୋହୁବେ କି ସେ କାଳିଆ ସୁନା ଗୋ ॥
ଅସିବେ ଏକ୍ଷଣି ରାଧେ ! ଲଳିତା ସଙ୍ଗିନୀ ।
ଝୁମ୍ ଝୁମ୍ ଶୁଭୁଛି ଏ କା' ନୂପୁର ଧ୍ୱନି ଗୋ ॥
ଶୁଣ ଗୋ ଶୁଣ ଗୋ ରାଇ-ବିନୋଦିନୀ ଧନି !
କ୍ଷଣମଣି ପାଶୁଁ ଟି ଲଳିତା ଫେରିଲେଣି ଗୋ !

ଲଳିତା—( ଗୀତ ଗାଇ ଗାଇ ପ୍ରବେଶ ହେଲେ )

ଗୀତ

କି ଦେଖିଲି ମା ! ସରିଯିବେ ବ୍ରଜରସିକ ଚନ୍ଦ୍ରମା ।
( ଘୋଷା )
ବାଞ୍ଛିବକା ନବ　　　ତମାଳ ପଲ୍ଲବ
ଗ୍ଲେବକବଅଛୁ ଶ୍ରୀଅଙ୍ଗ ସୁଷମା । ୧ ।

ଆହା କି ବଚନେ,                                  ଗଡ଼ୁଥିଲେ ଛଳେ
        ରଖ ରଖ ବୋଲି ବୃଷଭାନୁଜେମା । ୨ ।
ନୀପକୁଞ୍ଜେ ପ୍ରାଣ,                                ଯିବେ ଗୋ ଜାଣ
        ନିଶ୍ଚୟ ଯଶୋଦା ନନ୍ଦନ ପ୍ରତିମା । ୩ ।

ରାଧେ ! ବୃନ୍ଦାବନଚନ୍ଦ୍ର ଅପଣା ଶ୍ରୀ ହସ୍ତରେ କୁସୁମଶଯ୍ୟା ରଚନା କରି ସଚକିତ ନୟନରେ ତମ ଅଭିସାର ପଥକୁ ଅନୁସରିଛନ୍ତି । ଧନି ! ବିଳମ୍ବ ନ କରି ନୀଳ ବେଶଭୂଷା ହୋଇ କୁଞ୍ଜକୁ ଅଭିସାର କର, ନ ହେଲେ ନୀଳ ମୂରତିଟି ସରିଯିବେ ।

ରାଧା—( ଅନ ଥନ ନେଜେ ସଖିଙ୍କି ଚାହିଁ ) ଲଳିତେ ! ଅହା ! ମୋ ପ୍ରାଣବନ୍ଧୁ ଏତେ ଦୁଃଖ ସହୁଛନ୍ତି ? ହାୟ, ହାୟ, ସ[illegible] ମୁଁ କୁଞ୍ଜକୁ ଯିବି ।

ବିଶାଖା—ରାଧେ ! ତେବେ ନୀଳ ବେଶଭୂଷା ହେବ ଆସ ।

ସଖିଗଣ—

## ଗୀତ

ନୀଳଶାଢ଼ୀ ପିନ୍ଧ ମୋର ରାଈ ବିନୋଦିନୀ
ଶ୍ରୀଅଙ୍ଗେ କସ୍ତୁରୀ ଲେପ ଗୋବିନ୍ଦ ମୋହିନୀ ।
ମର୍କତ ବଳୟ ଭୁଜେ ପିନ୍ଧ କମଳିନୀ ।
ହୃଦୟରେ ଶୋଭା ପାଉ ହାର ନୀଳମଣି । ୨ ।

ଶ୍ରୀପଦେ ନୂପୁର ଗୁଞ୍ଜ କଟିରେ କିଙ୍କିଣୀ ।
କଣି କଣି ନାଦ ଶୁଣି କୃଷ୍ଣ ହେବେ କାଣି ।
ଅଭିସାରଣୀ ଗୋ ! ( କଣ୍ଠାଗ୍ରମଣି )
ବୃନ୍ଦାବନ ବିହାରଣୀ, ଅଭିସାରଣୀ ଗୋ । ୩ ।

( ହାତ ଧରାଧରି ହୋଇ ସମସ୍ତଙ୍କ ପ୍ରସ୍ଥାନ )

ପୌର୍ଣ୍ଣମାସୀଙ୍କ ପ୍ରବେଶ

ପୌର୍ଣ୍ଣମାସୀ—( ସ୍ୱଗତଃ ) ଅଜି ମହା ପ୍ରେମମୟୀର ମହା ଆନନ୍ଦରେ ମହା ଦୁଃଖ ଉପସ୍ଥିତ ହେବ । ଈର୍ଷାମାନ, ବିରହମାନ ପରେ ଦୁର୍ଜ୍ଜୟମାନ ଯାହା କି ସହଜରେ ତୁଟିବ ନାହିଁ । ଏ ଭଳି ମହା ମାନରେ ବୃଷଭାନୁଜେମା ସୁକୁମାରୀ ଶ୍ରୀରାଧା ଯେ କେତେ ଦୁଃଖ ସହିବେ, ଅଜ ସୁକୁମାର ମୁରଲି ଲାଲ ଛନ୍ଦୁଟି ଯେ କେତେ କଷଣ ଭୋଗିବେ, ତାହା କିଏ କହି ପାରିବ ? ଯାହା ହେଉ, ପ୍ରେମର ବିଚ୍ଛେଦ ନ ହେଲେ ମିଳନ ସୁଖ ଉପଲବ୍ଧି ହୁଏ ନାହିଁ । ଏଣୁ ଏ ରହସ୍ୟ ହିଁ ମୋହର କଳ୍ପନା । ଏବେ ଯାଉଛୁ, ଚନ୍ଦ୍ରାବଳୀ ତୁଳେ ଶ୍ରୀକୃଷ୍ଣଙ୍କ ମିଳନ କରାଇ, ରାଧାର ବାସକ ସଜ୍ଜା ଖଣ୍ଡିତା ପ୍ରଭୃତି ଅଷ୍ଟନାୟିକାଙ୍କ ଭାବ ଜନ୍ମାଇବ ।

( ପ୍ରସ୍ଥାନ )



# ଦ୍ୱିତୀୟ ଅଙ୍କ

## ଚତୁର୍ଥ ଦୃଶ୍ୟ

### ବେଶଗୃହ

( ସଖୀଗଣ ବେଢ଼ି ଶ୍ରୀରାଧାଙ୍କୁ ବେଶ କରାଇବା ଅଭିନୟ )

ସଖୀଗଣ—

ଗୀତ

ସାଜ ଗୋ ! ବେଶ ସାଜ ଗୋ ( ସଖି ) !
ମୋହନଙ୍କ ସଙ୍ଗେ ବିଳସିବ ପରା ?
କ୍ଷମା ହୁଅ ଲାଜ ଲାଜ ଗୋ । ଘୋଷା ।

ରହିଥିବେ ବନ୍ଧୁ          ନିକୁଞ୍ଜ ଦୁଆରେ,
ମଣ୍ଡିବା ଶ୍ରୀଅଙ୍ଗ          ଚନ୍ଦନ ଚୂଆରେ ।
ପ୍ରେମଭୋଳେ ଭୋଳେ          ନେବେ ପ୍ରେମ କୋଳେ
ଗୃହିଁ ସେ ମୋହନରାଜ ଗୋ । ୧ ।

( ସମସ୍ତେ ଗୀତ ଗାଇ ଗାଇ ବେଶ କରୁଥିବା ଅଭିନୟ )

ଲଳିତା—( ଶ୍ରୀରାଧାଙ୍କ ଚିବୁକରେ ଭ୍ରମରକା ବନ୍ଦୁ ଦେଇ କହୁଛନ୍ତି )
ରାଧେ ! ଏ ବେଶକୁ ଦେଖି ଆଜ ମଦନମୋହନ
ମୋହିତ ହୋଇଯିବେ ।

ଶଶୀଖା—ତା ନୋହୁଥିଲେ ରାଧା ଅମର ମୋହନ-ମନ-ମୋହିନୀ
ନାମ ବହି ଥାଆନ୍ତେ କି ?

( ଗୀତ ଗାଇ ଗାଇ ବୃନ୍ଦାଙ୍କ ପ୍ରବେଶ )

ଗୀତ

(ରାଧେ) ହୋଇଥାଅ ବେଗ କୁଞ୍ଜକୁ ଯିବା ପରି ।
ଦେଇଛନ୍ତି ସଙ୍କେତ ସେ ମୁରଲୀଧାରୀ ଗୋ । ( ଘୋଷା )
ବାମ ଚାମରକୁ ଜିଣି— ବାର କୁନ୍ତଳର ବେଣୀ,
ଯତନେ ସଜାଅ୍ ଖଞ୍ଜି କେତକୀ ଝରୀ ଗୋ । ୧ ।
ଉରଜ ଯୁଗଳେ ଚନ୍ଦ, ଲେପି ମୃଗମଦ ଚନ୍ଦ,
ହୃଦରେ ଲମ୍ବାଅ ସ୍ଥୂଳ ମୁକୁତା ହାରି ଗୋ । ୨ ।

( ଗୀତ ଗାଇ ଗାଇ ରାଧାଙ୍କ ଗଳାରେ ହାର ଦେଇ
କେତକୀ ପୁଷ୍ପ ଝରୀଟି ମସ୍ତକରେ ଖୋସିଦେଲେ )

ଲଳିତା—ରାଧେ ! ବୃନ୍ଦାଙ୍କଠାରୁ ତ ସଙ୍କେତ ପାଇଲ, ଏଥର
ଅଭିସାର କର ।

ଶ୍ରୀରାଧା—ହଁ, ଚାଲ ସଖି !

ଶଶୀଖା—ଚାଲ ଗୋ, ଚାଲ ।

ସଖୀଗଣ—(ଆନନ୍ଦମନେ)

ଗୀତ

ଚାଲ ଚାଲ ଚାଲ କୁଞ୍ଜେ କୁଞ୍ଜରଗାମିନୀ !
ଚାହିଁଥିବେ ପଥ ଚଉରାଶୀ ନୀଳମଣି । ଘୋଷା ।

ବାଜୁ କଣି କଣି କଟି କାଙ୍କିଣୀ-ଲଳିତେ ।
ଧର ଗୋ ତାମ୍ବୁଲବଟା ସଙ୍ଗିନୀ ଲଳିତେ ! । ୧ ।
କର୍ପୂର ଗନ୍ଧ ଚନ୍ଦନ ଧର ଗୋ ବିଶାଖେ !
ଢାଳ ଗୋ କୃଷ୍ଣ ଗୁମର ଚମ୍ପକଲତିକେ ! । ୨ ।
ନୀଳ ପୀତ ବାସ ଧର ଚିତ୍ରା ବିଚକ୍ଷଣା !
ବଜାଅ ଗୋ ତୁଙ୍ଗବିଦ୍ୟା ମୃଦୁ ମୃଦୁ ବୀଣା । ୩ ।
ଆରମ୍ଭ ଗୋ ନୃତ୍ୟଗୀତ ଅଗୋ ଇନ୍ଦୁରେଖା !
ସୁବାସିତ ଜଳ ଝରି ଧର ସୁଦେବୀକା ! । ୪ ।
ସଙ୍ଗ ସଙ୍ଗିଣୀ ଜଡ଼ାଇ ଅଗୋ ରଙ୍ଗଦେବୀ !
ମିଳନ ହୋଇବେ କୁଞ୍ଜେ ବଲ୍ଲଭ ବଲ୍ଲଭୀ । ୫ ।

( ସଖୀଗଣ ଗୀତ ଗାଇ ଗାଇ ପ୍ରସ୍ଥାନ )

ପଟ୍ଟ ପରିବର୍ତ୍ତନ



## ଦ୍ୱିତୀୟ ଅଙ୍କ

### ପଞ୍ଚମ ଦୃଶ୍ୟ

### କୁସୁମିତ ବନପଥ

( ଅଭିସାରିଣୀ ଶ୍ରୀରାଧାଙ୍କ ସହ ସଖୀଗଣ ପ୍ରବେଶ )

ଗୀତ

ଭାନୁ ନୃପତି କୁମାରୀ !
କୁଞ୍ଜବନେ ହୁଅ ଅଭିସାରୀ ଗୋ । ଘୋଷା ।

ଜୟ ଶ୍ରୀ ରାଧିକେ,                    ଜୟ ଗାନ୍ଧର୍ବିକେ,

ଅଜନମ ସୁକୁମାରୀ ଗୋ !

କୃଷ୍ଣ ପ୍ରାଣାଧିକେ,                    ପ୍ରେମ ଅମ୍ବୁଧିକେ,

ଶ୍ରୀ ବୃନ୍ଦାବନ ଈଶ୍ୱରୀ ଗୋ !

ଭାନୁ ନୃପତି କୁମାରୀ । । ୧ ।

( ସଖିମାନେ ଯେ ଯାହା ସେବା ଖଟଣୀରେ ଥିବା ଓ ଶ୍ରୀରାଧାଙ୍କ ପାଦଶ୍ରେ ମଣାଇ ପ୍ରସ୍ଥାନ )

ପଟ୍ଟ ପରିବର୍ତ୍ତନ



## ଦ୍ୱିତୀୟ ଅଙ୍କ

### ଷଷ୍ଠ ଦୃଶ୍ୟ

### ନିଭୃତ ନିକୁଞ୍ଜ

ଶ୍ରୀକୃଷ୍ଣ—( ଯୁବାବେଶେ ଦଣ୍ଡାୟମାନ )

### ଗୀତ

ଅହା ପରାଣ ଈଶ୍ୱରୀ !

ସାହା ମୋର ନବୀନ କିଶୋରୀଟି । ଘୋଷା ।

ତୋ ଆସିବା ପଥ                    ଅନୁସରି ମୁଁ ତ,

ହୋଇଲିଣି ଏତେ ସରି ଗୋ ।

କିଣା ଜନଠାରେ,                    ଈର୍ଷାବତୀ ହେଲେ,

ସୁନ୍ଦରୀ କି କରାଧରୀ ଗୋ । ୧ ।

( ସ୍ବଗତଃ ) ରାଧେ ! ଦୟା କରି ଦର୍ଶନ ଦିଅ ।

[ ନେପଥ୍ୟେ ନୂପୁର ଧ୍ୱନି ]

ଶ୍ରୀକୃଷ୍ଣ—ଅହା ! ଇଏ କା ନୂପୁର ଧ୍ୱନି ?
କଣ୍ଠୋଷ୍ଠ ମୋର ଅସ୍ପୃଷ୍ଟ କି ?

( ଚନ୍ଦ୍ରାବଳୀ, ଶୈବ୍ୟା, ପଦ୍ମା ପ୍ରବେଶ )

ଶ୍ରୀକୃଷ୍ଣ—( ନିକଟକୁ ପାଞ୍ଚେଟି ଯାଇ କହୁଲେ ) ପ୍ରିୟେ ! ଏ ଦୀନ-ଜନରେ ଏତେ ଅଭିମାନ କାହିଁକି ? ରାଧେ ! ତମ ପ୍ରାଣରେ ମୁଁ କେତେ କଷ୍ଟ ଦେଇଛି, ତା ସବୁ ଭୁଲି ନ ଭାବି ଦରହସିତ ବଦନେ କରୁଣା କଟାକ୍ଷରେ ମୋତେ ଗ୍ରହ, ସଖି ! ( ଏହା କହି ଆଲିଙ୍ଗନ କଲେ )

ପଦ୍ମା—ସଖି ଶୈବ୍ୟେ ! ଏ ନାଗର ରାଧା ଭାବରେ ଆବେଶ ହୋଇ-ଥିବାରୁ ଆମ ପ୍ରିୟସଖି ଚନ୍ଦ୍ରାବଳୀଙ୍କି ରାଧା ବୋଲି ମନେ କରିଛନ୍ତି ।

ଶ୍ରୀକୃଷ୍ଣ—( ଚମକି ପଡି କାତର ଭାବେ ରହିଗଲେ )

ପଦ୍ମା—ଲମ୍ପଟ ! ଆଜି କାତର ହେଲେ କଣ ହେବ ? ଏତେ ଦିନକେ ଧରା ପଡ଼ିଚ, ଆଜ ସହଜରେ ଛାଡ଼ିବୁ ନାହିଁ ।

ଗୀତ

ଏତେ ଦିନକେ ପଡ଼ିଚ ଧରା ଛାଡ଼ି ନ ଦେବୁ ନାଗର !
କେଣିକି ଯିବ ଯାଅ ତ ଭଲ ଲମ୍ପଟ ରସସାଗର । ଘୋଷା ।

ତୁମ୍ଭର ଭେଳା ଅମ୍ଭ ସଜନା କାଲ ବସନ୍ତ ଜାଗର ।
ରଙ୍ଗିଣୀ କୁଞ୍ଜେ ଅସ ହେ ଏବେ ଲଣି ହେବ ଜଳାଗର ।

ଚନ୍ଦ୍ରାବଳୀ—( ବନସ୍ୱରେ )

## ଗୀତ

ଅସ ପ୍ରାଣେଶ୍ୱର　　　ଏ ଅଭାଗିନୀର,
ହୃଦୟ-ଗଗନ-ଇନ୍ଦୁ ହେ ।
ଅକାଲୁ କଙ୍କରୀ,　　　ପଦ ସେବାକାରୀ,
ଯୋଗ୍ୟା ନୁହେ ରସସିନ୍ଧୁ ହେ ।
ଅହେ ରସିକଶେଖର !
ଅନାଥିନୀ କୁଞ୍ଜେ ଶଜେଚର ହେ । ୧ ।

( ଶ୍ରୀକୃଷ୍ଣଙ୍କ ଭେଳା ପ୍ରସ୍ଥାନ )

( ସଖିମାନଙ୍କ ସହ ଶ୍ରୀରାଧାଙ୍କ ପ୍ରବେଶ )

ସଖୀଗଣ—( ଅନନ୍ଦମନେ )

## ଗୀତ

ଜୟ ଜୟ ଶ୍ରୀରାଧିକେ !
ବୃଷଭାନୁ ସୁତା ଗାନ୍ଧର୍ବିକେ ଗୋ । ଘୋଷା ।
କୃଷ୍ଣ ବେଶଧାରୀ,　　　କୃଷ୍ଣ ଅଭିସାରୀ,
ଜୟ କୃଷ୍ଣ ପ୍ରାଣାଧିକେ ଗୋ ।
ବୃନ୍ଦାବନେଶ୍ୱରୀ,　　　ନବୀନ କିଶୋରୀ,
ଶ୍ୟାମ ପ୍ରେମ ଅରାଧିକେ ଗୋ । ୧ ।

ଶ୍ରୀରାଧା – ( କୁଞ୍ଜଶୂନ୍ୟ ଦେଖି ) ସଖି ! ଏଇ ତ ନିଭୃତ ନିକୁଞ୍ଜ, କାହାନ୍ତି ? କୃଷ୍ଣ କାହାନ୍ତି ? (ଲଳିତାଙ୍କ ପ୍ରତି) ଲଳିତେ ! ପ୍ରାଣବନ୍ଧୁ ମୋର କାହାନ୍ତି ? ମୋତେ ଦେଖାଅ, ସଖି !

## ଗୀତ

ଦେଖାଅ ଲଳିତେ ! ତାଙ୍କ ମୁଖ ସୁଧାଇନ୍ଦୁ ଗୋ !
କାହାନ୍ତି ମୋ ମଦନ ମୋହନ ପ୍ରାଣବନ୍ଧୁ ଗୋ ?
ଦେଖାଅ ଗୋ ଲଳିତେ !
ରତ୍ନେଶ୍ୱରଙ୍କର ମୁଖ ମାଧୁରୀ ( ଦେଖାଅ )
(ସେହି) ଲଳିତ ନାଚୁଥା ଦୃଷ୍ଟିକି ( ଦେଖାଅ ) । ୧ ।
ନିକୁଞ୍ଜ ମନ୍ଦିର ପ୍ରତି ପ୍ରତିକରି ଖୋଜ ଗୋ ।
କେଉଁଣେ ଗଲେ ସଜନି ! ମୋ ବ୍ରଜ ଯୁବରାଜ ଗୋ ।
( ଦେଖାଅ ଗୋ ଲଳିତେ )
ଛନ୍ଦା ଚରଣଙ୍କ ରୂପ ମାଧୁରୀ ( ଦେଖାଅ )
ଦେଖାଅ ଗୋ ଲଳିତେ । ୨ ।

ଲଳିତା—ରାଧେ ! କାତର ହୁଅନା, ଧୈର୍ଯ୍ୟଧର, ତୋ ନୟନ-ସମ୍ପଦକୁ ଅମ୍ଭେମାନେ ଖୋଜି ଆଣି ଦେବୁଁ ।

ବିଶାଖା—ସଖି ! ମୁଁ ଜାଣି ପାରୁଛି ହଟିଆ ମୋହନ ହଠକରି ଏହି କୁଞ୍ଜରେ କେଉଁଠେଇଁ ଲୁଚି ରହିଛନ୍ତି, ତାଙ୍କୁ ଖୋଜିବା ।

## ଗୀତ

ଯାଙ୍କୁ ଖୋଜିବା ( ଖୋଜିବା )

ଏହି କୁଞ୍ଜେ ଲୁଚିଥିବେ ଅବା ( ଯାଙ୍କୁ ଖୋଜିବା ) । ଘୋଷା ।

ମନ ଊଣା ନ କର ଗୋ ଜୀବନର ଧନ !

ନିଶ୍ଚେ ତୋର ପ୍ରାଣବନ୍ଧୁ ଦେବେ ଦରଶନ ।

ଅଗୋ ଚନ୍ଦ୍ରବଦନା !

ଫୁଟିବେଲେ ନୁହ ବିରସମନା ଗୋ ।

ଚନ୍ଦ୍ରବଦନା !

ଭେଟେ ପରହାସ ଜାଣନ୍ତି ଯାହା ଗୋ । ୧ ।

ରାଧେ ! ଅଧୀର ନ ହୋଇ ଏହିଠାରେ ଥାଅ, ମୁଁ ଏଇକ୍ଷଣି ସେ ଲମ୍ପଟଙ୍କୁ ଖୋଜି ଆଣୁଛି । ( ପ୍ରସ୍ଥାନ )

ବିଶାଖା—ସଖି ! ଲଳିତା କୃଷ୍ଣଙ୍କୁ ଖୋଜି ଆଣୁ ଆଣୁ ଆସ କୁଞ୍ଜ ମଣ୍ଡିବା ।

## ଗୀତ

କର ଗୋ କୁଞ୍ଜ ମଣ୍ଡନ ।

ବିଳସିବେ ରାଧା ବଂଶୀବଦନ ଗୋ !

ଦେଖି ତୋଷ ହେବ ଅମ୍ଭ ମନ, ସଜନୀ ଗୋ । ୧ ।

ଆଣ ଗୋ ଫୁଲ ଗୁଚ୍ଛୁ ।

ଜଳାଅ ରତନ ଚନ୍ଦ୍ରଜିଦ ଗୋ ।

ଗୋଳ ଚନ୍ଦନ କର୍ପୂର ଚୂଆ, ସଜନୀ ଗୋ । ୨ ।

ଫୁଲର ଝାଲର ଆଣ !
ଧାଡ଼ି ଧାଡ଼ି ବାନ୍ଧ ଫୁଲ ତୋରଣ ଗୋ ।
ଫୁଲେ ନିକୁଞ୍ଜ କର ନିର୍ମାଣ, ସଜନୀ ଗୋ । ୩ ।
ଫୁଲେ ଥାଳଟ ଗୁମ୍ଫର ।
ଫୁଲେ ଖଟଦୋଳି ତିଆର କର ଗୋ ।
ଫୁଲେ ଶେଯ ମୃଦୁଳ ତିଆର, ସଜନୀ ଗୋ । ୪ ।
ଭାଙ୍ଗି ରଖ ଗୋ ତାମ୍ବୂଳ ।
ଯତ୍ନ କରି ରଖ ସୁବାସ ଜଳ ଗୋ ।
ଗୁନ୍ଥି ରଖ ନାନା ଫୁଲମାଳ, ସଜନୀ ଗୋ । ୫ ।

ଶୋଖା—ରାଧେ ! ଏଇ ଫୁଲ ଖଟରେ ବସ । ଆଜ ପରା ପ୍ରାଣନାଥଙ୍କ ସଙ୍ଗେ ଶଳସିବ ? ଆଜ ମନ ମାରି ଦେଇ ବସୁଚ କାହିଁକି ମ ?

ଶ୍ରୀରାଧା—( ଫୁଲ ଶେଯରେ ବସି ଆନନ୍ଦ ମନେ )

## ଗୀତ

ସଖି ଗୋ ! ମୋର କୁଞ୍ଜକୁ ଆଜ ।
ଆସିବେ ପରା ସେ ନାଗରରାଜ ଗୋ । ଘୋଷା ।
ଆଜ ତ ଏ ମୋର କେଳି ମନ୍ଦିର ।
ଦିଶୁଅଛୁ ସଖୀ କେଡେ ସୁନ୍ଦର ଗୋ । ୧ ।
ଗୁନ୍ଥି ରଖିଛ ଏ କୁସୁମ ମଲ୍ଲୀ ।
ମୋ ମନମୋହନ ପିନ୍ଧିବେ ବୋଲି ଗୋ । ୨ ।

ଗୋଲ ରଖିଛି ଏ ଚନ୍ଦନ ଚୂଆ ।

ଲାଗି ହେବେ ମୋ ଶ୍ରବଣନୋଦଆ ଗୋ । ୩ ।

ଶ୍ରୀଙ୍ଗ ରଖିଛି ଏ ବଇଆ ପାନ ।

ଭୁଞ୍ଜିବେ ବୋଲି ମୋ ନୟନ ଧନ ଗୋ । ୪ ।

ତୋତେ କି ଦଶୁଅଛି ସଖି, କହ ?

ଶାଖା—ଅସିବେ ଟଗୋ ରାଧେ ନାହିଁ ସନ୍ଦେହ ଗୋ । ୫ ।

( ଏହୁପଦ ପ୍ରତି ସଖୀକି ପଚ୍ଚାରିବା ଓ ସଖୀମାନେ 'ଅସିବେ ଗୋ' ବୋଲି କହୁଥିବା ଅଭିନୟ )

ଶ୍ରୀରାଧା—( ବୃକ୍ଷରୁ ଝଡ଼ିବା ପତ୍ର ଶୁଣି କହିଲେ ) ସଖି ! ଏଇ ଶୁଣ, ମୋ ହୃଦୟ ନିଧିଙ୍କ ପଦ ଶବଦ ।

ଶାଖା—ନା, ଗୋ ରାଧେ ! ବୃକ୍ଷ ଲତାମାନଙ୍କରୁ ଶୁଖିଲା ପତ୍ର ଝଡ଼ିବାରୁ ଏପରି ଶୁଣା ଯାଉଛି ।

ଶ୍ରୀରାଧା—ସଖି ! ଏଇ ଶୁଣ, ମୋ ପ୍ରାଣନାଥଙ୍କ ନୂପୁରଧ୍ୱନି ।

ରନ୍ଦା—ନା, ଗୋ ରାଧେ ! ଏ ଝିଙ୍କାରି ସ୍ୱନ ।

ଶ୍ରୀରାଧା—( ଅଧର କୁଞ୍ଚିତ କରି ନବଘନକୁ ଚାହିଁ ) ସଖି ! ଏଇ ଦେଖ, ରଙ୍କନିଧି ମୋର ଅସୁଛନ୍ତି ।

ରଙ୍ଗଲତା—ରାଧେ ! କଳାମେଘକୁ ଦେଖି ଭ୍ରମ ହୋଇ ଯାଉଛି କିଆ ପ ?

ଶ୍ରୀରାଧା—ତେବେ କଣ ପ୍ରାଣବନ୍ଧୁ ମୋର ଅସିବେ ନାହିଁ ? ସଖି ଏ ଗୋ ! ମୁଁ ବୁଝି ପାରୁଛି, ପ୍ରାଣବଲ୍ଲଭଙ୍କୁ ମୋର କେଉଁ କପଟ ପ୍ରେମରେ ବାନ୍ଧି ରଖିଛି । ନ ହେଲେ ସେ ଛାଡ଼ନ୍ତା ଘଟନ୍ତା ?

## ଗୀତ

ଏ ରଜନୀ । ଶ୍ୟାମବନ୍ଧୁଙ୍କୁ ମୋ,
କୃଷ୍ଣଚନ୍ଦ୍ରଙ୍କୁ ରଖିଲ କେ ସଜନୀ । ଘୋଷା ।
ମୁଁ ଦୁଃଖୀ ହୋଇଲି ଅଭାଗିନୀ ।
କୃଷ୍ଣ ନଇଲେ ମୋ କୁଞ୍ଜେ ପୁଣି ।
ନାନାକାନ୍ତ ପୁଷ୍ପେ    ଶେଯ ସଜାଇଲି,
କା' ପୁରେ ରହିଲେ ବେଣୁପାଣି ! ୧ ।
ଅମଲାଣ ବସ୍ତ୍ର କୁଞ୍ଚିକର,
ନାନା ପୁଷ୍ପମାଳ ଗୁନ୍ଥାଇଲି ।
ଏ ସର୍ବ ପଦାର୍ଥ    ହୋଇଲା ବଅର୍ଥ,
ନ ଅସିଲେ ମୋର ନୀଳମଣି । ୨ ।
ତାମ୍ବୁଳ ପୁର ଅଳାଇ ରେ
ସଜାଡ଼ି ରଖିଲି ଏ ପାଞ୍ଚରେ ।
ଚୁଆ ଚନ୍ଦନ    କର୍ପୂର ଗୋଳାଥିଲି,
ବୋଳାଆନ୍ତି ଶ୍ୟାମ ଅଙ୍ଗେ ପୁଣି । ୩ ।

ବଣାଗୋ—ରାଧେ ! ଏପରି ଉତ୍କଣ୍ଠିତା ହୁଅ ନାହିଁ; ଲଳିତାସଖୀ ଅସିବା ଯାଏ ଧୈର୍ଯ୍ୟବତୀ ହୋଇଥାଅ ।

ଶ୍ରୀରାଧା—ସଖି ! ସେ ଲମ୍ପଟ ଖଳ, ଖଣ୍ଡ, ଭଲ, ଏହି ତିନି ଗୁଣକୁ ଧାରଣ କରିଛନ୍ତି । ବୋଧ ହେଉଛି ଅନ୍ୟ ଖଣ୍ଡ ଗୁଣରେ ମୋତେ ଭୁଲିଗଲେ ।    ( ଅଶ୍ରୁ ମୁଞ୍ଚନ )

ଶଶାଗା—ବରହୃଣୀ । ଏ ସନ୍ତାପ ସିନ୍ଧୁରେ ଅଜ ଭାସନାହିଁ, ସ୍ଥିର ହୁଅ ।

ଗୀତ

ସ୍ଥିର ହୁଅ ଅଗୋ ଧନ ସୁଇ ଚନ୍ଦ୍ରବଦନୀ !
ଅକୂଳେ ହସନା ଜ୍ଞାନ ପସରା ସଙ୍ଗିନୀ । ୧ ।
ଅସିବେ ଅବଶ୍ୟ ତୋର ନୟନ ପ୍ରତିମା ।
ନ ହୁଅ ବରସମନା ବୃଷଭାନୁ ଜେମା । ୨ ।
ପଦ୍ମନୀକୁ ଛାଡ଼ି କାହିଁ ରହେ କି ଭ୍ରମର ?
ଧୈର୍ଯ୍ୟଧର ଧୀର ହୀର ଧରୁଛୁଁ ତୋ କର । ୩ ।
( ସଖୀଗଣ ସାନ୍ତ୍ୱନା ଦେଇ ଗୀତ ଗାଉଥିବା । )

ପଟ୍ଟ ପରିବର୍ତ୍ତନ



## ଦ୍ୱିତୀୟ ଅଙ୍କ

### ସପ୍ତମ ଦୃଶ୍ୟ

କୁସୁମିତ ବନପଥ

( ଖୋଜି ଖୋଜି ଲଳିତାଙ୍କ ପ୍ରବେଶ )

ଲଳିତା—(ସ୍ୱଗତଃ) ବଙ୍କା ଅଖି ଯେ କେଉଁ ବଙ୍କା ପଥେ ଯାଉଛନ୍ତି, ତାହା କିଛୁ ସ୍ଥିର କରି ପାରୁ ନାହିଁ । କାହିଁ ? କେତେ ତ ଖୋଜିଲଣି—ପାଉନାହିଁ; ଅଜି ଲୁଅଚିଡ଼ି ଗଲେ ?

## ଗୀତ

ତାହୁଁ ଗଲେ ମୁରଲୀଫୁଙ୍କା ।
ଯୁବତୀ ରସିଅ କାମିନୀ ରଙ୍କା । ଘୋଷା ।
ଗୋପପୁରେ ପଶି ଗୋପୀଙ୍କ ମନ୍ଦରେ,
ଦହି ଦୁଧ ଖାଇ ଛୁଣ୍ଡାନ୍ତି ଶିକା ।
ଯମୁନା କୂଳରେ ବସ୍ତ୍ର ଚୋରି କରି,
କେଳି କଦମ୍ବେ ଯେ ବାନ୍ଧେ ପତାକା । ୧ ।
ପାଦ-ପାଣି ବଙ୍କା ନୂପୁର ହିଁ ବଙ୍କା;
ଚୂଳହିଁ ବଙ୍କା ତା ଶ୍ରୀହାଣି ବଙ୍କା ।
ବଙ୍କିମା ଅଧରେ ମୁରଲୀ ବଜାଇ,
ଡାକୁଥାନ୍ତି ଅସ ଅସ ରାଧିକା । ୨ ।

ଅହୋ ! କଣ କରିବଟି ? କେଉଁ କୁଞ୍ଜରେ ତ ଦେଖାଗଲେ ନାହିଁ, ଅଜ କଣ ଚନ୍ଦ୍ରାବଳୀ କୁଞ୍ଜକୁ ଯାଇଛନ୍ତି ? ଯାଏଁ ଦେଖେଁ । (ପ୍ରସ୍ଥାନ)

ପଟ୍ଟ ପରିବର୍ତ୍ତନ



# ଦ୍ୱିତୀୟ ଅଙ୍କ

## ଅଷ୍ଟମ ଦୃଶ୍ୟ

## ରଙ୍ଗିଣୀ କୁଞ୍ଜ

( ଶ୍ରୀକୃଷ୍ଣ, ଚନ୍ଦ୍ରାବଳୀ ପୁଷ୍ପଶଯ୍ୟା ଉପରେ ବଲସୁଥିବା;
ଶୈବ୍ୟା, ପଦ୍ମା ଚାମର ଢାଳୁଥିବା ଅବସ୍ଥା )

ଚନ୍ଦ୍ରାବଳୀ—( ବନସ୍ୱରେ ଗାଉଛନ୍ତି )

## ଗୀତ

ବନ୍ଧୁବଦନେ ପାଇଛୁ ହେ ନୀଳମଣି !
ହୃଦଚନ୍ଦନ ମୋହନ ଚନ୍ଦ୍ରାମଣି । ୧ ।
ଭୁଜ ପାଶରେ ନବଢ଼େ ବାନ୍ଧିଥିବ ।
ପ୍ରାଣବନ୍ଧୁ ହେ ! କଦାପି ନ ଛାଡ଼ିବ । ୨ ।
ମନଚୋର ହେ ନାଗର ! ତୁମ୍ଭେ ମୋର ।
ଉପହାର ଘେନ ଏହୁ ଫୁଲହାର । ୩ ।
ମାଗୁଛୁ, ମାଗୁଛୁ, ଭୁଲି ଯିବ ନାହିଁ ବନ୍ଧୁ ।
ମାଗୁଛୁ, ମାଗୁଛୁ, ଅଭାଗିନୀ କୁରୂପିଣୀ ।
ମାଗୁଛୁ, ମାଗୁଛୁ, ଶ୍ରୀଚରଣ ଦାସୀ ଏତେ ।
ମାଗୁଛୁ, ମାଗୁଛୁ, ମନେ ରଖିଥିବ ବନ୍ଧୁ !
ମାଗୁଛୁ, ମାଗୁଛୁ, ( ଭୁଲି ଯିବ ନାହିଁ ) ।
( ଆଲିଙ୍ଗନ କରିବା ଅଭିନୟ )

ଶ୍ରୀକୃଷ୍ଣ—( ପ୍ରତିଆଲିଙ୍ଗନ କରି ଗାଇଲେ )

## ଗୀତ

ଚନ୍ଦ୍ରାବଳୀ ଚନ୍ଦ୍ରାନନେ ଗୁଚ୍ଛକୁନ୍ତଳା
ରେ ଧନ ! ଗୁଚ୍ଛକୁନ୍ତଳା !
ମନ ମାନ ଫିଙ୍ଗିଦିଅ ରେ ପ୍ରେମଶୀଳା । ୧ ।

ସରୁଦନେ ସିନା ମୁହିଁ ଭୋ କଣାଜନ
ରେ ଧନ ! ଭୋ କଣାଜନ !
ସେବକ ପଣକୁ ନାକ ଦେବ ଭାଜନ । ୨ ।

ଲଳିତା—( ପ୍ରବେଶ ହୋଇ ଲତା ଉହାଡ଼େ ରହି ସ୍ୱଗତଃ )

ଲମ୍ପଟ ! ତୁମ୍ଭର କଣ ଏହି ପ୍ରେମ ପରିଚୟ ? ଯେବେ ତୁମ୍ଭ ମନରେ ଏପରି ଥିଲା, ତେବେ ମୋ ହାତରେ ସଙ୍କେତ ଦେଇ ପ୍ରିୟସଖୀ କଣୋସ୍ୱିକ ମୋର କାହିଁକି କୁଞ୍ଜକୁ ଅଣାଇଥିଲ ? ( କ୍ରୋଧରେ ) କନୁ ଜାଣିଥାଅ ଲମ୍ପଟ ! ମୋ ହାତରେ ଯେ କଅଣ ହୋଇପାରେ ତାହା ପରେ ବୁଝିବ ।

( ମସ୍ତକରୁ କେତକୀ ଦଳ ଆଣି ନେତ୍ର ଅଞ୍ଜନରେ ନଖମୂନେ ଲେଖିବା ଅଭିନୟ )

—ପତ୍ର—

> ଦୁଃଖିନୀ କମଳାନୀକ ଲତାକୁଞ୍ଜରେ ରଖି ଲମ୍ପଟ ତୁମ୍ଭ କୁଟଜ ପୁଷ୍ପରେ ଉନ୍ମତ୍ତ ହେବା ଭଲ ନୁହେ । ଏହି ହସ୍ତ ଲେଖାରୁ ଜାଣି ପାରିବ କି ନାହିଁ, ମୁଁ ବୃଷଭାନୁ ରାଜକେମା ଶ୍ରୀରାଧାର ପ୍ରିୟସଖୀ, ଲଳିତା ।

( ତରତରେ ପତ୍ର ବନ୍ଦ କରି ଗବାକ୍ଷରେ ଫିଙ୍ଗି ଦେଇ ପ୍ରସ୍ଥାନ )
( ଶ୍ରୀକୃଷ୍ଣ ଚନ୍ଦ୍ରାବଳୀ ପୁଷ୍ପ ଶଯ୍ୟାରେ ଥିବା )

ପଟ୍ଟ ପରିବର୍ତ୍ତନ



# ଦ୍ୱିତୀୟ ଅଙ୍କ

## ନବମ ଦୃଶ୍ୟ

### କୁସୁମିତ ବନପଥ

ଲଳିତା—( ପ୍ରବେଶ ହୋଇ ସ୍ୱଗତଃ ) ଲମ୍ପଟ ! ତୁମ୍ଭେ ଏବେ କପଟି ? ଅହା ! ମୋ ପ୍ରିୟସଖୀ କଣୋଗ୍ରଟି କି ଦୁଃଖ ଭୋଗୁ ନ ଥିବ ? ହଉ ଥାଅ, ଥାଅ; ରାଧା ଯେ ତୁମ୍ଭଙ୍କୁ କି ଦଣ୍ଡ ବିଧାନ କରିବ, ତାହା ପରେ ଜାଣିବ । ରହ, ରହ, ରତ୍ନାବଳୀ ସଙ୍ଗେ ରଙ୍ଗ ରହସ୍ୟ କରୁଥାଅ ଚେତବ ଯେ ?

### ଗୀତ

ଦୂର ହଉ ରାଧା ଭାବ ହେ ମାଧବ !
ପଛନ୍ତେ ମନେ କରୁଥିବ । ଧୋକା ।
ମୋ ନାମ ଯେବେ ଲଳିତା ହେ ମାଧବ,
ରାଧାର ପାଦ ଅଲତା ।
ତୋତା ଭଗରି ଦେଇ ହେ ଚନ୍ତାମଣି,
ରଖିବ ନିଜ ଗୌରବ, ହେ ମାଧବ । ୧ ।

ନଷ୍ଟେ ଏଡ଼ା ଥାଅ ଜାଣି, ହେ ମାଧବ !
ପୋଛାଇବ ନେତ୍ର ପାଣି ।
ଗଳାରେ ବସନ ଦନ୍ତରେ ତୃଣ,
ଧରାଇବା ଯାଏ ଯିବ, ହେ ମାଧବ ! ୨ ।

( ଗୀତ ଗାଇ ଗାଇ ପ୍ରସ୍ଥାନ )

ପଟ୍ଟ ପରିବର୍ତ୍ତନ



## ଦ୍ୱିତୀୟ ଅଙ୍କ

### ଦଶମ ଦୃଶ୍ୟ

### ନିଭୃତ ନିକୁଞ୍ଜ

( ଶ୍ରୀରାଧା ପୁଷ୍ପ ଶଯ୍ୟାରେ ଅକୁଳିତା ଭାବେ ବସିଥିବା । ସଖୀଗଣ ସାନ୍ତ୍ୱନା ଦେଉଥିବା ଅଭିନୟ )

ଶ୍ରୀରାଧା—ସଖି ! ବୃଥାରେ କାହିଁକି ଏତେ ସାଜ ସଜା କଲି ? ହାୟ ! ମୁଁ ଅଭାଗିନୀ କାହିଁକି କୁଞ୍ଜକୁ ଆସିଲି ? ସଖି ଗୋ ! ସେ କପଟିଆ ମୋହନଙ୍କ ଗାଢ଼ ନିଦ୍ରା ପଡ଼ିଲାଣି ।

### ଗୀତ

ମୋହନ ଗାଢ଼ ନିଦ୍ରା ପଡ଼ିଲା ମା । ଗୋ, ନିଦ୍ରା ପଡ଼ିଲା ମା । ଘୋଷା ।
ଅପାର ରଜନୀ, ହେଲା ରେ ସଜନୀ !
ପ୍ରାଚୀ ବଧୂକୁ ବନ୍ଧୁ ଚୁମ୍ବିଲା ମା । ୧ ।

କି ଯୋଗରେ ଅକ                                        ସାଙ୍ଗଥିଲି ସକ
କାନନ-ମଲ୍ଲୀ ଦଶା ଘଟିଲା ମା । ୨ ।
ତୋଳି ଦେ ଗୋ ଡାଲି,                                  ପୂରିଲା ଫାଙ୍କାଳି,
ନିକୁଞ୍ଜ ଭାଗ୍ୟ ଭୋଗ ଅଣ୍ଟିଲା ମା । ୩ ।
ପର ପୀରତିକି,                                        ପ୍ରୁରୁଷ ଜାତିକି,
ପରତେ କଲା ଫଳ ମିଳାଲା ମା । ୪ ।
( ଗୀତ ଗାଇ ଗାଇ ଲଳିତାଙ୍କର ପ୍ରବେଶ )

ଗୀତ

ନାନା କୁଞ୍ଜେ ଗଲି ଧୀରି !
କାହ୍ନୁଁ ନ ପାଇଲି ରାଧେ ମୁରଲୀଧରି । ଘୋଷା ।
ଶେଷେ ଚନ୍ଦ୍ରାବଳୀ କୁଞ୍ଜ,                    ମଧ୍ୟରେ ରସିକରାଜ
ଦେଖିଲି ପଲଙ୍କପରେ ଦଶନ୍ତ ଚୋରି । ୧ ।
କରକେ ନେତ୍ରାଞ୍ଜନରେ,          ଦେଖି କେତକୀ ଦଳରେ,
ଗବାକ୍ଷ ମାର୍ଗରେ ଫିଙ୍ଗି ଅସିଲି ତ୍ୱରି । ୨ ।

ଶ୍ରୀରାଧା—( ଅଶ୍ରୁପୂର୍ଣ୍ଣ ନୟନେ କହୁଲେ ) ଲଳିତେ ! କଣ କହୁଛ ? ସେ ଲମ୍ପଟ ଚନ୍ଦ୍ରାବଳୀ କୁଞ୍ଜରେ ? ସଖି ଗୋ ! ମୁଁ କୃଷ୍ଣଛଡ଼ା ହେଲି । ଧିକ୍ ଏ ଜୀବନ । ସଖି ! କରମ ଫଳ ପାଇଲି ।

ଗୀତ

କରମ ଫଳ ମିଳାଲଣି !
ମରମ ଭିତରେ ଜଳାଲଣି ଗୋ । ପ୍ରାଣମିତଣି ! । ଘୋଷା ।

ଭରମରେ ପଡ଼ିଗଲି,                    ନରମ କଥାରେ ଭୁଲି
ମୁଁ ଏହା ସହିଲି ।
ଏବେ କପଟି କି କଲେ ଅଣି ଗୋ । ୧ ।

ଫିଙ୍ଗ ଏ ଗନ୍ଧ ଚନ୍ଦନ,                ନାହିଁ ଆଉ ପ୍ରୟୋଜନ,
ଏ ଶଢ଼ିଆ ପାନ ।
ବାସି ହେବ ବୋଲି ନ ଥିଲି ଜାଣି ଗୋ । ୨ ।

ଫିଙ୍ଗ ଏ କୁସୁମହାର,          ନ କର ଆଉ ଅଦର ଗୋ,
ସେହୁ ଦଗାଦାର ।
(ମୋତେ) ଛଡ଼ାଫୁଲ ପରି କଲେଣି ଗୋ । ୩ ।

ଲଳିତା—ରାଧେ ! ମୁଁ ତାଙ୍କୁ ଯେତେ ଖୋଜୁଛି, ମୋ ମନ ଜାଣେ । ଏବେ ମୋ କଥା ମାନ ବଡ଼ୁପର କଠିନା ହୁଅ ।

ଶ୍ରୀରାଧା—ସଖି ! ସେ ଶଠ ଶ୍ୟାମ ସତେ କଣ ନ କଲେ ?

## ଗୀତ

ଶଠ ଶ୍ୟାମ ସତେ କି କଲେ ମୋତେ ?
ଜାଣି ନେଲେ କି ଗୋ ଚନ୍ଦ୍ରାପୁରତେ ଗୋ ପଚାରି ଲଳିତେ ! ॥
ଅବଳା ହୃଦ କି ଏହା ସହନ୍ତା ?
ପାଷାଣ ହେଲେ ତ ଫାଟି ଯାଆନ୍ତା ଗୋ ଏହା ନ ସହନ୍ତା ! ॥
କି କାର୍ଯ୍ୟ ଅଛି ଗୋ ଆଉ ଏ କୁଞ୍ଜେ ?
କି ସୁଖ ଅଛି ଗୋ ଏ ଫୁଲଶେଯ ଗୋ ସଢ଼ିଗଲି ଲାଜେ ! ॥

ଧିକ ଧିକ ମୋର ଏ ବେଶଭୂଷା ।
ଧିକ ହେଉ ମୋର ମିଳନ ଅଶା ଗୋ ! ହେଲି ଲୋକହସା ॥
(ଅଉ) କହନା ସଖି ସେ ଶ୍ୟାମ ପ୍ରସଙ୍ଗ ।
ତା କଥା ଶୁଣି ଗୋ ଥରୁଛି ଅଙ୍ଗ ଗୋ ! ସେ କାଳ ଭୁଜଙ୍ଗ ॥
( କ୍ରୋଧରେ ଜର ଜର ହୋଇ ତଳି ପଡ଼ିବା ଅଭିନୟ )

**ସଖୀଗଣ**—( ପ୍ରବୋଧ ) ଧନି ! ଧନି ! ! ଦମ୍ଭଧର ।

## ପରଦା ପତନ



( ଦୁର୍ଯ୍ୟମାନ ଅରମ୍ଭ )




ପ୍ରଥମ ଦୃଶ୍ୟ

କୁସୁମିତ ବନପଥ

( ଶ୍ରୀକୃଷ୍ଣଙ୍କ ପ୍ରବେଶ )

## ଗୀତ

ବହିଲାଣି ମନ୍ଦ ବାତ ପାହିଲାଣି ରାତି ।
ଦହିଲାଣି ଯାତନା ମୋ ପ୍ରିୟା ଦୁଃଖ ଛାତି । ପଦ ।
କହିଲାଣି କୁହୁ ତାନେ କୋକିଳ ଭାରତୀ ।
ସହିଲାଣି କେତେ କଷ୍ଟ ପରା ମୋ ଶ୍ରୀମତୀ । ୧ ।

( ଗବାକ୍ଷ ଦ୍ୱାରକୁ ଚାହିଁ ସ୍ୱଗତଃ ) ଏଏ କଣ ? ( ପତ୍ରିକା ଧରି ଅସ୍ପଷ୍ଟ ଭାବରେ କହିଲେ ) ହାୟ ! ଏଏ ତ ଲଳିତା ହାତ ଅକ୍ଷର ! ମୁଁ କି ମନ୍ଦ ବିଗୁର କଲି ? ( ଆଶଙ୍କା ମନେ ଯାଉ ଯାଉ )

## ଗୀତ

କି କଲି କି କଲି ଅହୋ ପରାଣ-ଈଶ୍ୱରୀକି ।
ପରାଣ ଈଶ୍ୱରୀ ମୋର ନବୀନା କିଶୋରୀକି । ୧ ।
ସଙ୍କେତ ମୁଁ ଦେଇଥିଲି ନିଭୃତ କୁଞ୍ଜକୁ ।
ଅଭିସାର କରିଥିବ ମୋ ବନ୍ଧୁ ସେଠାକୁ । ୨ ।

ମାନିନୀ ତ ହୋଇ ଚଳି ଯାଇଥିବ ମୋରେ ।
କି ବୋଲି ମୁଁ ଜଣାଇବି ଧନୀ ଶ୍ରୀ ରାମ୍ଭରେ । ୩ ।
କି ବୁଦ୍ଧି କଲି ମୁଁ ଲାବଣ୍ୟନିଧିକି ତେଜି ।

( ଏହି ପଦମାନ ଗାଇ ଗାଇ ଯିବା ସମୟେ ଚମକି ପଡ଼ି ସଚକିତେ କହିଲେ ) ଅହା ! ଏହି ତ, ଫୁଲହାର ଗୁଡ଼ିକ ଏଠେଇଁ ଛାରଖାର ହୋଇ ପଡ଼ିଛି, ( ପୁଣି ପାଦୁଣ୍ଡେ ଯାଇ ) ଅହା ! ଏଇତ ତାମ୍ବୁଳ, କର୍ପୂର, ଚନ୍ଦନ ସବୁ ଏଠାରେ ଫିଙ୍ଗି ଦେଇ ପ୍ରିୟା ମୋର ଚାଲି ଯାଇଛି । ଏବେ ମୁଁ କି ଉପାୟ କରିବି ? ଯାଏଁ, ପ୍ରାଣପ୍ରିୟାର ମନଭାବ ପରୀକ୍ଷା କରେଁ ।

## ଗୀତ

ଏବେ ମୁଁ ନିଭୃତ କୁଞ୍ଜ ଦୁଆରକୁ ଯିବି ।
ପ୍ରାଣପ୍ରିୟା ମନ ଭାବ ପରୀକ୍ଷା କରିବି । ୧ ।

ଯଦି ମହାମାନବତୀ ହୋଇଥିବ ଧନୀ ।
ବେନିକର ଯୋଡ଼ି ପାଶେ କରିବି ବିନତି । ୨ ।

ତଳେ ତାସ ଦେଇ ତାକୁ ମାଗିବି ଶରଣ ।
ଦୋଷ କ୍ଷମା କର ବୋଲି ଧରିବି ଚରଣ । ୩ ।

ବିନୟ ବଚନେ ଅବା ବୁଝିବ ତା ମନ ।
ବୃଷଭାନୁ ସୁତା ମୋର ଜୀବର ଜୀବନ । ୪ ।

ତା ବିନେ ତିନି ଭୁବନେ ନାହିଁ ଆଉ ଗତି ।
ମୋହର ସର୍ବସ୍ୱ ସିନା ରାଧିକା ମୂରତି । ୫ ।
( ଶ୍ରୀରାଧାଙ୍କ ଭାବ ଭାବ ଭାବି ଶ୍ରୀକୃଷ୍ଣ ପ୍ରସ୍ଥାନ )
ଦୃଶ୍ୟ ପରିବର୍ତ୍ତନ



## ତୃତୀୟ ଅଙ୍କ
### ଦ୍ୱିତୀୟ ଦୃଶ୍ୟ
### ନିଭୃତ ନିକୁଞ୍ଜ

(ମାନମୟୀ ଶ୍ରୀରାଧା ଗଣ୍ଡରେ କର ଦେଇ ବସିଥିବା,
ସଖିମାନେ ଦୁଃଖିତା ହୋଇ ଦୂରେ
ପାର୍ଶ୍ୱରେ ବସିଥିବା )

ଶ୍ରୀରାଧା—( କ୍ରୋଧରେ ଅଧର କମ୍ପାଇ ) ସଖିଏ ଲୋ ! ଆଜି ଏହୁ
ଦୃଢ଼ ପ୍ରତିଜ୍ଞା ଶୁଣ—

**ଗୀତ**

ଯଦି ସେ ଲମ୍ପଟ                    କପଟିଆ ଶଠ,
ଦାଇବେ ସଞ୍ଜବେ ଭେଟ ।
ମୋ କୁଞ୍ଜ ଦୁଆର,                    ମଡ଼ାଇ ନ ଦେବ,
କହୁଛୁ କର ଅକଟ ।
(ତାଙ୍କୁ) ମନା କରି ଦେବ ଗୋ !
ପରାଣ ସଖିଏ ( ତାଙ୍କୁ ମନା କରି ଦେବ ଗୋ )

(ମୋର) ଏହି ଦୃଢ଼ ବ୍ରତ ଗୋ ।
ସର୍ବେ ଜାଣିଥାଅ, ମୋର ଏହି ଦୃଢ଼ ବ୍ରତ ଗୋ ।

ଶ୍ରୀକୃଷ୍ଣ—( ପ୍ରବେଶ ହୋଇ କାକୁସ୍ୱରେ କର ଯୋଡ଼ି କହିଲେ )

କୟ ରାଧେ ! ଶ୍ରୀରାଧେ ! !
ବୃନ୍ଦାବନ ବିଳାସିନୀ ରାଧେ ! ! !

ବିଶାଖା—ସଖି ! ହେଇ ଦେଖ, ସେ ଲମ୍ପଟ କୃଷ୍ଣ ଆସିଲେଣି ।

ରାଧା—( କ୍ରୋଧରେ ) ସଖି ! ଦୂର କର ।

( ଏହା କହି ମୁହଁ ବୁଲାଇ ବସିଲେ )

ଲଳିତା—ଲମ୍ପଟ ! ଏତେବେଳକୁ ଆସି ମୁହଁ ଦେଖେଇଲ କି ?

ଅହା ! ହା ! ହା !

ଛାନ୍ଦ

"ମଣିଯାଏଁ କଳା ଗଣ୍ଠିର ଧନ,
ଚନ୍ଦ୍ରାବଳୀନାଥ ହୃଦ ଚନ୍ଦନ ।"

ଗୀତ

ଏତେବେଳକୁ ହେ          ମୁଖ ଦିଶିଲା କି ଆଜ
ପଥବଣା ହୋଇଲ କି ବ୍ରଜ-ଯୁବରାଜ ?
ଲମ୍ପଟ ହେ ! ବ୍ରଜଯୁବରାଜ । ଘୋଷା ।
ପରିହରି ଶରୀ ପ୍ରୀତି,          ଆନ ରମଣୀରେ ମାତି
ରାଧା ପାଶେ ଆସିବାକୁ ପାଇଲ କି ଲଜ ?
କଳାକାହ୍ନୁ, ପାଇଲ କି ଲଜ । ୧ ।

ତୁମ୍ଭ ଅସିବା ସମୟ,　　　ଛାଡ଼ି ହୋଇ ତୋଷମନ୍ଦ,
ଜାଗି ବସିଥିଲି କୁଞ୍ଜେ ସାଜ ଫୁଲଶେଯ ।
ଶଠଗ୍ରେଷ୍ଠ ! ସାଜ ଫୁଲଶେଯ ।
ଦଗାଦାର ! ସାଜ ଫୁଲଶେଯ । ୨ ।

ବିଶାଖା—ଛଇଲ ହେ ! କାଲ୍ କେଉଁଠି ଥିଲ କି ?

ଗୀତ

ଛଇଲ ! କାଲି କାହିଁ, କାଲି କାହିଁ ରହିଲ ହେ ?
ମୀଠ ନିକୁଞ୍ଜରେ ଜଗାଇ ଦେଲ ହେ । ଘୋଷା ।
ସଞ୍ଜରୁ ଅସି ଏ ନବ ବନିତା,
ଖଞ୍ଜନନେତ୍ରୀ ହେଲା ଜାଗରିତା,
କଞ୍ଜ ଗଲା ଫୁଟି, ଏହୁ ପର ତୋଟି—
କାଟି ଦେବା କଥା ହେଲା କି ଭଲ ହେ ? ୧ ।
ଏହା ଥିଲା ଯେବେ ତୁମ୍ଭର ମନେ,
ଡକାଇ ନ ଆଣ୍ଡ ଏ ଘୋର ବନେ,
ଯେ କୁଳ କଣ୍ଟକ, ତାକୁ ଏତେ ସର,
କରାଇବା ନିକି ଏ ଏକା ଗେଲ ହେ । ୨ ।
ଅଣ୍ଟିଗଲା ତୁମ୍ଭ ସ୍ନେହ ସମ୍ପତ୍ତି ।
ଯାହା ରସେ ବୁଡ଼ି ବଞ୍ଚୁଥିଲା ସତୀ,
ଯାଅ ତାହା ପାଶେ, ମାଧବ ସୁରସେ;
ଭ୍ଲଉ ନାହିଁ ପର ବାମ-ଅମଳ ହେ । ୩ ।

( ଗୀତ ଛଳେ ରାଧାଙ୍କ ନିକଟକୁ ଯିବା ନିମନ୍ତେ
ନେତ୍ର ଠାରଦେବା ଅଭିନୟ )

ଶ୍ରୀକୃଷ୍ଣ—( ଧୀରେ ଧୀରେ କୁଞ୍ଜ ଦୁଆରକୁ ଯିବା ଅଭିନୟ )

ଲଳିତା—( ଛଳ ଶ୍ଳେଷରେ ) ଅହା ! ହା ! କି ସୁନ୍ଦର ସୁଅଗ !
ହଇ ହେ ଶଠ ! ତମକୁ ଲାଜ ନାହିଁ, ଏଣେ ଅସୁଚ ?
ଯାଅ, ଯାଅ, ତମ ସ୍ୱାତ ଗତ ସବୁ ଜଣା ଗଲାଣି ।

## ଗୀତ

ଯାଅ ଯାଅ ହେ ମୋହନ ଯା ଯା ଫେରି ଯା ।
ଅମ୍ଭ ଶ୍ରୀମତୀଙ୍କ ମନା କୁଞ୍ଜକୁ ନ ଯା । ଘୋଷା ।
ଏଡୁ ଶୁଝିଲୁ ସୁଅଗ,　　　　ନ ଦେଖାଇ ଚଲ ବେଗ,
ତୁମ୍ଭ ଗୁଣ ଗୋପପୁରେ ନାଗରୀ ଜାଣିକା । ୧ ।

ଶ୍ରୀକୃଷ୍ଣ—ଲଳିତେ ! ମୋର କି ଦୋଷ ଦେଖି ଏପରି କହୁଚ ?

ଲଳିତା—ତମର କି ଦୋଷ ? ତେତେ କଣ ଜାଣି ନାହଁ ? ହଇହେ !
ତମ ଶ୍ରୀମୁଖଟି ଶୁଖି ଯାଇଚି କାହିଁକି ? କହିଲ ।

## ଗୀତ

ଶ୍ରୀମୁଖ ଯାଇଛି ଶୁଖି ହେ କାହିଁକି ?
ଶ୍ରୀମୁଖ ଯାଇଛି ଶୁଖି ।
ଜନିଦ୍ର ହୋଇଲା ପ୍ରାୟେ ତ ଦିଶୁଛି
ନୀଳ ଇନ୍ଦୀବର ଆଖି । ୧ ।

ଶ୍ରୀକୃଷ୍ଣ— ଶୁଣ ଅରେ ବାଳା, ଧବଳୀ ବତ୍ସା ମୁଁ
ଖୋଜି ଖୋଜି ଶ୍ରମ ପାଇ ।
ପ୍ରଭାତ ଯାମିନୀ, ହେବାରୁ କାମିନୀ,
ଶୟନ ଭୋଜନ ନାହିଁ । ୨ ।

ଲଳିତା— ଅଧରେ ଏ କିସ କଳା ହେ ନାଗର !
ଅଧରେ ଏ କିସ କଳା ?

ଶ୍ରୀକୃଷ୍ଣ— ଜାମୁଫଳ ଏକ ଖାଇଲି ରେ ବାଳା !
ତେଣୁ କୋଳ ଲାଗିଗଲା । ୩ ।

ଲଳିତା— ଓଷ୍ଠରେ ଏ କିସ କ୍ଷତ ହେ ନାଗର !
ଓଷ୍ଠରେ ଏ କିସ କ୍ଷତ ?
ଗୁପତ ନ କର ଅହେ ନନ୍ଦସୁତ !
ବ୍ୟକତ କର ଛନ୍ଦ ତ । ୪ ।

ଶ୍ରୀକୃଷ୍ଣ— ହୋଇ ବତ୍ସଳକ ଶୁକ ମୁଖେ ମୁଖ,
ଦେଇ ପଢ଼ାନ୍ତେ ସଙ୍ଗୀତ ।
ସେ ତ ଥିଲା ବଳି ବିମ୍ବଫଳ ବୋଲି,
କଲା ତହିଁ ଚଞ୍ଚୁ ଘାତ । ୫ ।

ଲଳିତା— ତନୁରେ ଏ କିସ ଗାର ହେ ନାଗର !
ତନୁରେ ଏ କିସ ଗାର ?

ଶ୍ରୀକୃଷ୍ଣ— କଣ୍ଟକ ବନେ ଲାଗିଲା ଗୋ ଲଳିତେ !
ତେଣୁ ତନୁ ନାରଖାର । ୬ ।

ଲଳିତା— ହେ ଶଠ ମୋହନ ଦଶେ ତ ମଳିନ,
ତୁମ୍ଭ ଅଙ୍ଗେ ହୀନ ବାସ

ଶ୍ରୀକୃଷ୍ଣ— ସଖୀ ହୋଇ ମେଳ ଦେଲେ ଗେଲୁ ବୋଲି,
ଦେଖ ସର୍ବ ଅଙ୍ଗଦେଶ । ୬ ।

ଲଳିତା— ଅହେ ଗିରିଧାରୀ ବଞ୍ଚିକ ଜୀବିକା-
କରି ତୋଷିବ କି ମନ ?
ରତି ଶ୍ରାନ୍ତ, ଦନ୍ତକ୍ଷତ, ଚମ୍ବଦାନ,
ଦିଶୁଛି କରଜ ଚିହ୍ନ । ୭ ।
ଏତେ ଲକ୍ଷଣ ହେ ଏତେ ଲକ୍ଷଣ ହେ
ବହୁଛ କପଟି ଗୁରୁ ।
ଅହେ ବନମାଳୀ ତୁମ୍ଭ ପୀରତିକି,
ଯୁହାର କରୁଛୁ ଦୂରୁଁ । ୮ ।

ଶ୍ରୀକୃଷ୍ଣ—( ବିଷାଦ ମନେ ଦଣ୍ଡାୟମାନ )

ବିଶାଖା—ଲମ୍ପଟ ହେ । ତମ କହିବା ଭଙ୍ଗିରୁ ସବୁ ଜଣା ପଡ଼ୁଚି,
ଏତେ କୂଟ କପଟ କାହୁଁ ଶିଖିଥିଲ ?

## ଗୀତ

କାହୁଁ ଶିଖିଥିଲ ଏତେ କୂଟ କପଟ ?
ଶଠ ଧୂର୍ତ୍ତ ଲମ୍ପଟିଆ ହେ ପୀତପଟ । ଘୋଷା ।
ଭୁଲାଇ କହିବା ସ୍ୱୀତ, ଜଣା ଗଲାଣି ଶ୍ରୀପତି
ଚହ୍ଲାଇ ଦେଉଛ ସବୁ ଚୂଳ ମୁକୁଟ । ୧ ।

ସଖୀଗଣ—( ଭ୍ରୂଭଙ୍ଗିରେ ରାଧାଙ୍କ ପଛ ଦେଶକୁ ଯିବାପାଇଁ ଠାରିଦେବା ଅଭିନୟ )

ଶ୍ରୀକୃଷ୍ଣ—( ଧୀର ଗତିରେ ରାଧାଙ୍କ ପଛ ଦେଶରେ କରଯୋଡ଼ି ରହିବା ଅଭିନୟ )

ଲଳିତା—( ଦର୍ପଣଟିଏ ରାଧାଙ୍କ ସମ୍ମୁଖରେ ଥୋଇଦେବା ଅଭିନୟ )

ଶ୍ରୀରାଧା—( ଦର୍ପଣରେ ଶ୍ରୀକୃଷ୍ଣଙ୍କ ପ୍ରତିମୂର୍ତ୍ତିକି ଚାହିଁ )

ଗୀତ

ଛୁଅ ନା ମୋ ତନୁକୁ, ଯାଅ, ଯା, ହେ ମୋହନ !

ଥଳା ହେ ମୋହନ ! ଏ କି ରୀତି ଛୁଅ ନା ମୋ ତନୁକୁ । ଘୋଷା ।

ବାସ ଦିଶ କାହାର,                ନ ପାରିଲ କି ବାରି ?
ପାଳିଛ କଲ ଗୋରୀ,                ମାନିଲ ଏ ଲପର ?

ବ୍ରୀଡ଼ା ନୋହିଲ କି ହେ,              କୀର୍ତ୍ତି ଭୁବନୁ ଅପି,

ଦେଖାଅ ଚନ୍ଦ୍ରରେଖା ପରି, ହେ ମୋହନ ! ୧ ।

ଅଧରକୁ ଅଞ୍ଜନ,                  କାହିଁ ଏ ଅରଜନ ?

ଖଞ୍ଜନ ନୟନା ସେ                ଦେଇଥିଲ ଚୁମ୍ବନ

ଭିଡ଼ଥିଲ ନାଗରୀ,                ଦେଖ ହେ ଭଲ କରି

ଠାବ ଠାବକେ ଚୂଡ଼ ଚକ୍ର, ହେ ମୋହନ ! ୨ ।

ଶ୍ରୀକୃଷ୍ଣ—( ସମ୍ମୁଖକୁ ଯାଇ ବିନୟରେ )!

ଗୀତ

ଦେଇଁ ଦୋଷେ କରଦେଇ କୁଞ୍ଜ ମନା,

ଅରେ ଚନ୍ଦ୍ରାନନା । ଘୋଷା ।

ଦୟାମୟୀ ହେଲ ମୋ ବନଉ, କ୍ଷମାନିଧାନୀରେ ଗଜଗତ !
ଆନ ନାହିଁ ସତ, ଯା ଶୃଙ୍ଗାର ରସ,
ମନ୍ଦ ଦୁରନ୍ତର ସ୍ନେହାଧୀନା । ୧ ।
ମଧୁର ଅଧର ସୁଧା ତୋର, ଦାନ କର ପ୍ରାଣ ରଖ ମୋର:
ସିଦ୍ଧମନ୍ତ୍ର ସିନା ସେଥିରେ ନବୀନା;
କୃପା କଟାକ୍ଷରେ ଥରେ ଅନା । ୨ ।
ମୋ ଖଣ ପଖଣ ପ୍ରଣୟିନୀ, ଧରି ମଣ୍ଡନାରେ ପୀନସ୍ତନୀ;
ବରାଙ୍ଗିନୀ ଧନୀ ମରାଳ ଗମନୀ,
ନିଖଣ ନ କର ସୁଲୋଚନା ! ୩ ।
କୁନ୍ଦ ଦଶନା ସୁନ୍ଦରୀମଣି, ମନ୍ଦହାସୀ ହସି କହ ବାଣୀ;
ଛନ୍ଦ ଚିରେ କାର ଦ୍ୱନ୍ଦ ନ ବଢ଼ାର,
( ତୋର ) ପଦ୍ମ ପାଦ ତଳେ ମାଗେଁ କ୍ଷମା । ୪ ।

ଶ୍ରୀରାଧା—( ଅତିଶୟ କ୍ରୋଧରେ ) ଲମ୍ପଟ ! ଦୂର ହୁଅ ।
( ଏହା କହି ଶ୍ରୀକୃଷ୍ଣଙ୍କୁ ହାତରେ ଅଡ଼ କରଦେଇ
ମୁଖ ବୁଲାଇ ବସିବା ଅଭିନୟ )

ଲଳିତା—ମାନିନି ! ଶ୍ୟାମବନ୍ଧୁଙ୍କୁ ସତେ ପର କର ଦେଉଛ ?
ସଖି ! ଏ ଥରକ ଦୋଷ କ୍ଷମା କର ।

## ଗୀତ

ଏ ଥରକ ଶ୍ୟାମ ଦୋଷ କର କ୍ଷମା ଗୋ । ପଦ ।
ପଦତଳେ ପଡ଼ି ଯାଉଛନ୍ତି ସଢ଼ି,
ଟୋଳ ହେଲେ ଶ୍ରୀମୁଖ-ଚନ୍ଦ୍ରମା ଗୋ । ୧ ।

ନ ଘୋଡ଼ା ଶ୍ରବଣ          କହୁଛନ୍ତି ଶୁଣ
କୃପାନିଧି କୃଷଭାନୁଜେମା ଗୋ । ୨ ।
କେତେଥର ସହୁ          ଯାଇ ନାହୁଁ ସହୁ !
ଅପରାଧ ଯାକ ଦେଇନି ପ୍ରେମା ଗୋ । ୩ ।
ପଶୁପ ନଗରୀ—          ଶିଖି ଯେବେ ସବ,
ନ ଗୃହ୍ନିଲେ କେଶରୀମଧ୍ୟମା ଗୋ । ୪ ।

ଶ୍ରୀରାଧା—ନା ସଖି ! ଏ ରାଧା ସେପରି ନୁହେ ।

( ଶ୍ରୀକୃଷ୍ଣଙ୍କ ପ୍ରତି କ୍ରୋଧ ସହିତ ) ଚନ୍ଦ୍ରାବଳୀ ନାଥ ! ଚନ୍ଦ୍ରାବଳୀ ହୃଦୟନିଧି ! ! ଚନ୍ଦ୍ରାବଳୀ କୋଡ଼ଂକୁରଙ୍ଗ ! ! ! ଯାଅ, ଦୂର ହୁଅ । ହେ ଚନ୍ଦ୍ରାବନ୍ଧୁ ! ଯାଅ ଯାଅ, ଏ ସବୁ ଚିହ୍ନ ଦେହରେ ମଣ୍ଡି ହୋଇ କଅଣ ଦେଖାଇବାକୁ ଅସିଲ ? ଛି, ଛି, ହେ ନିର୍ଲ୍ଲଜ ! ଧୋଇବାପାଇଁ କଣ ଯମୁନା ନଈରୁ ପାଣି ଶୁଖି ଗଲା କି ? ଯାଅ, ଆଉ ମୋ ସନ୍ତାପ ସାଗର ବଢ଼ାଅ ନାହିଁ, ଯାଅ ଚଞ୍ଚଳ ଯାଅ ।

## ଗୀତ

ଯାଅ ହେ ମାଧବ, ଅଭିଶି ବାଞ୍ଛବ,
ଚନ୍ଦ୍ରାବଳୀଧବ କେଶବ !
(ହେ) ଚନ୍ଦ୍ରାବଳୀଧବ କେଶବ !
ଦେଖିଲେ ତୁମ୍ଭଙ୍କୁ          ସନ୍ତାପ ମୋହର,
ବେଳକୁ ବେଳ ଜାଭବ ।
ଯାଅ ହେ, ଯାଅ ହେ !

ଚନ୍ଦ୍ରାବଳୀ ଚୋର-କୁରଙ୍ଗ !
ଯାଅ ହେ, ଯାଅ ହେ !
ଜଣାଗଲା ତୁମ୍ଭ ରଙ୍ଗ, ଯାଅ ହେ, ଯାଅ ହେ । ୧ ।
ଖଣ୍ଡି ଜଗାଗରେ,                    ନେସ ଢୁଳୁ ଢୁଳୁ,
ଢଳ ପଡ଼ିବ କାଳିଆ,
( ହେ ) ଢଳ ପଡ଼ିବ କାଳିଆ ।
ଯା ପାଦ ଯାବକ,                    ମସ୍ତକେ ମଣ୍ଡିଛ,
ହେ କପଟି କୁହାଳିଆ
ଯାଅ ହେ, ଯାଅ ହେ,
ସେ ନବ ରମଣୀ—                    ହୃଦ-ବିଳାସିନୀ
ତାହା ନିକଟକୁ ଯାଅ ହେ, ଯାଅ ହେ, ।୨ ।
( ହାତରେ ଠେଲିଦେବା ଅଭିନୟ )

ଶ୍ରୀକୃଷ୍ଣ—( ପଛକୁ ଘୁଞ୍ଚିଯାଇ କାନ୍ଦକାନ୍ଦ ଲୁହ ଗୋଚ୍ଛ ପୋଚ୍ଛ )

ଗୀତ

ବନ୍ଧୁ ରେ, ନିଶ୍ଚେ ମରିବି,          ଆଉ ସହି ନ ପାରିବି,
କାଳିନ୍ଦୀ ହ୍ରଦରେ ଦେବି ଝାସ ।
କାଳୀୟ ବ୍ୟାଳ ସେ ଖାଉ,          କେବା ଅପବାଦ ଯାଉ,
ଚୋର ହେଉ ଧ୍ୱଂସ ନାଶ ଯଶ ରେ !
ଚନ୍ଦ୍ରବଦନା !
ରସିକ-ମଣ୍ଡଳୀ ମଧ୍ୟେ ମୋର ।
ଉଡିବ ପ୍ରେମ ପତାକା ହୋଇ ଫରହର ରେ । ୧ ।

ବନ୍ଧୁ ରେ ମୋ ତନ ଦାହ, ଭସ୍ମ ପଡ଼ିଥିବ ହୃଦ,
ଭଦା ବା ତୁ ଯମୁନାକୁ ଗଲେ ।
ଉଡ଼ିଣ ପବନବଳେ, ପଡ଼ୁଁ ତୋ ଚରଣ ତଳେ,
ଜୀଇ ମୁଁ ଉଠିବି ମରିଥିଲେ ରେ ।
ଚନ୍ଦ୍ରବଦନା !

* * * * * * *

( ରାଧ କାହ୍ନ ପ୍ରସ୍ଥାନ )

ପରଦା ପତନ






## ପ୍ରଥମ ଦୃଶ୍ୟ

### ଶ୍ରୀରାଧାଙ୍କ ପୁର

( ମାନମୟୀ ଶ୍ରୀରାଧା ଗଣ୍ଡରେ କର ଦେଇ ବସିଥିବା ଓ ସଖୀମାନଙ୍କର ପ୍ରବୋଧନା )

### ଗୀତ

ନାରାୟଣି ଗିର—   ଧାଣ୍ଟ ଠାରେ କି ବସ୍ତୁର
ଏ ରେଷ ବହ୍ନିଲୁ ଗୋ ?
ଚାର ନ ପାର ଖାର   ବୋଲି ଅମୃତ ଚାର-
ଜାଣି ଫିଙ୍ଗି ଦେଲୁ ଗୋ ।
ଘାରହେବୁ ପଛେ ସେନା ।
ଗାରିମାରେ ସୁଗ ସାର ଦେ ନା ବୋ । ୧ ।
ଶୁକ ସନକ   ଜନକାଦ୍ୟ ତ୍ରୈଲୋକ୍ୟ-
ଯାଙ୍କ ଯା ନାମ ଭଜନ୍ତି ଗୋ ।
ସେ କରଯୋଡ଼ି,   ସେବକ ଜନ ପରି
ତୋ ଛାମୁରେ ରହିଥାନ୍ତି ଗୋ ।
(ତାଙ୍କୁ) ନ କର ନିରଶ ଆଜ ।
ଟେକ ମୁଖ ଶ୍ୟାମ ଦୁଃଖ ଯାଉ ଗୋ ! । ୨ ।

ଏଣୀ ନୟନା କାଣିଥ ଅଛୁ ଭାଳି—
ଫଣିରେ ନର୍ତ୍ତନ କଲେ ଗୋ ।
ପୁଣି ସେ ଭୂଲଣ— ପାଣି କରୁଁ ବେଷ,
କାଣି ମନ୍ଦର ଧଇଲେ ଗୋ ।
ପାଣି ଧରୁଅଛୁଁ ଢୋର ।
ବୀଣା-ବାଣୀ ଏ ସ୍ତିତ ନ ଧର ଗୋ । ୩ ।

ଶ୍ରୀରାଧା—

ଗୀତ

କୃଷ୍ଣନାମ ଅଜ— ଠାରୁ ମୋ ଶ୍ରବଣେ,
ନ ଶୁଣାଇବଟି କେହୁ ଗୋ ।
କୃଷ୍ଣବର୍ଣ୍ଣ ଦ୍ରବ୍ୟ ଯେ ଦେଖାଇବ ଗୋ,
ନାଶ୍ରୟୁଁ ଭଗାସ୍ତ ସେହୁ ଗୋ ।
ଜାଣିଥାଅ ମୋ ସଜନୀ !
ଏହୁ ରାଧାର ପ୍ରତିଜ୍ଞା ବାଣୀ ଗୋ । ୧ ।
ନୀଳମଣି ହାର, ଗଳାରୁ ବାହାର,
କର ସହୁ ! ଫିଙ୍ଗିଦିଅ ଗୋ ।
ମରକତ ଚୁଡ଼ି, କରୁଁ ନିଅ କାଢ଼ି,
ସୁବର୍ଣ୍ଣ ଚୂଡ଼ି ପିନ୍ଧାଅ ଗୋ ।
ଏ ନୀଳ ଶାଢ଼ୀକି ନେଇ ।
ଯମୁନା ସ୍ରୋତେ ଧାଅ ଭସାଇ ଗୋ । ୨ ।

ଭାଙ୍ଗି ଦେଇଣ ରାକ୍ଷ,                    ଏ ଶୁଆ ଶାରୀଙ୍କି,
ଚଞ୍ଚଳେ ଉଡ଼ାଇ ଦିଅଂ ଗୋ ।
କୃଷ୍ଣବର୍ଣ୍ଣ ଶେଯ,                    ଅଜି ମୋ ପଲଙ୍କେ
ସଜନିଏ ! ନ ସଜାଅ ଗୋ ।
କଳା ଉପଗୂର ଯେତେ ।
ସଖୀ ! ନ ଦେଖାଇବ ମୋ ନେତ୍ରେ ଗୋ । ୩ ।

ଲଳିତା—

## ଗୀତ

ଅଗୋ ରାଧେ ! କଳାକୁ ତୁ ନିନ୍ଦୁ କାହିଁପାଇଁ ?
କଳାକୁ ତ ଗଣୁଥିବ କରିଥିଲୁ ସହି ଗୋ । ୧ ।

ତାଳିଅ ସ୍ନେହରେ ତାହେ ବୋଲାଇଛୁ କଳା ।
କଳା ଘନେ ରୁହିଁ ପରି ହେଉ ଭାବେ ଭୋଳା ଗୋ ? । ୨ ।

କଳା କୋଇଲର ସ୍ୱର ଶୁଣି କି ନ ହେଉ ?
କିରେଣି କିରେଣି ତାକୁ ଧରିବାକୁ ଧାଉଁ ଗୋ । ୩ ।

କଳା ଭ୍ରମରକୁ ଦେଖି ମଲ୍ଲୀ ସୁମନ ରେ ।
ହସୁଥାଉ କି ବିଗୂର ଅପଣା ମନରେ ଗୋ ? । ୪ ।

ଅଜ ପୁଣି କହୁ ଏ କି ବିପରୀତ କଥା ?
ସରଳା କୋମଳା ତୋତେ ନ ଲଗେ କି ବ୍ୟଥା ଗୋ ? । ୫ ।

ସଖୀଗଣ—

## ଗୀତ

ମାନମୟୀ ରାଧେ ! ତୋର ଗୋ ଅଳି ଏ କି ବିଧାନ ?
କଳାକୁ ଶରଧା ଛୁଟାଇ ଦେଲୁ ଜୀବନ ଧନ ! । ୧ ।
ଯେବଣି ମୟୂର ନାଚକୁ ରଙ୍ଗ ପର ତୁ ହେଉ ।
ତାକୁ ତ ଅବଶ୍ୟ ଗୃହିବୁ କିମ୍ପା ଏ କଥା କହୁ ? । ୨ ।
ରବି ପୂଜି ଗଲେ କିଶୋରୀମଣି କିବା ଅଧରୀ ।
ଦେଖିବୁ ନାହିଁ କି ତମାଲବନ କଳା ମାଧୁରୀ ? । ୩ ।
ଛାଡ଼ ପାରିବୁ କି କଳାକୁ ଅଗୋ ଚନ୍ଦ୍ର ବଦନା !
ନ ଯିବୁ କି ଧନି ! ଗାଧୋଇ କଳା ପାଣି ଯମୁନା ? । ୪ ।

ଶ୍ରୀରାଧା—

## ଗୀତ

ଅଗୋ ସଖି ! କଳା ଯମୁନା ଜଳକୁ ନ ଯିବି ଅଉ ଗାଧୋଇ ।
କଳା ତମାଳକୁ କେବେ ନ ଗୃହିଁବି କହୁଅଛି ଆନ ଦେଇ, ଗୋ ସଖି !
କଳା କସ୍ତୁରୀ ଦେଜିବ ନାହିଁ, ଗୋ ସଖି !
କଳାପାଚୀ ଦିଅ ଫୋପଡ଼ାଇ, ଗୋ ସଖି ! । ୧ ।
କଳା କୋଇଲି ସ୍ୱନକୁ ଗୋ ସଜନି ! ନ ଶୁଣିବ ମୋ ଶ୍ରବଣ ।
କଳାକୁ ଜୀଜିଲା କେବେ ନ ଦେଖିବ ଏ ମୋ ଦୃଢ଼ ବ୍ରତ ଜାଣ, ଗୋ ସଖି !
କଳା ଯା ଅଛି ଫିଙ୍ଗ ପାଣି କି, ଗୋ ସଖି !
ଭଲା ନଦିଅ ମୋ ପୁରେ ରଖି, ଗୋ ସଖି । ୨ ।

କଳା କମଳକୁ ନ ଗୁନ୍ଥିବ ଆଜ, ନ ତୋଳିବ କଳା ମଲ୍ଲୀ ।
କଳା ଭ୍ରମର ମୋ ପାଶକୁ ନ ଆଣ ଏତିକି ପ୍ରାର୍ଥନା କଲି, ଗୋ ମିତ !
କଳାଦ୍ରବ୍ୟ ନ କଲାଅ ଗତ୍ର, ଗୋ ମିତ !
କଳା ବେଳକୁ ହେଲି ଅଦ୍ଭୁତ, ଗୋ ମିତ ! । ୩ ।
କଳାମେଘୀ-ଗୃଦ୍ଧଆକୁ ଗୋ ଏଣିକି ଚାଣିବ ନାହିଁ ସଦନେ ।
କଳାରୁ ଶରଧା ତୁଟାଇଲି ଗଧା ବୋଲି ରଖିଥାଅ ମନେ, ଗୋ ସହି !
କଳାମାନଙ୍କୁ ବିଶ୍ୱାସ ନାହିଁ, ଗୋ ସହି !
କଳା କାଳେ ପରାଣେ ନାଶଇ, ଗୋ ସହି ! । ୪ ।
ସଖୀମାନଙ୍କର—

ଗୀତ

ଲଳିତା—କି ନିନ୍ଦ କଳାକୁ ରାଧେ ! ତୁମ୍ଭ କେଶ କଳା ?
ଶ୍ରୀରାଧା—ଚନ୍ଦନ ବୋଳି ତାହାକୁ କରିଦିଅ ଧଳା । ୧ ।
ବିଶାଖା—ଦେଖ ତିଳଚିହ୍ନ ତୁମ୍ଭ ଅଙ୍ଗେ ଦାଉ ଦାଉ ?
ଶ୍ରୀରାଧା—ତିଳକ ଲଗାଇଦିଅ ତା ଗରବ ଯାଉ । ୨ ।
ଚିତ୍ରା—ତୁମ୍ଭ ସୁନାଅଙ୍ଗେ ବିରାଜଇ କଳାଶିରା ?
ଶ୍ରୀରାଧା—ଘୋଡ଼ାଅ ବସନେ ତାକୁ ଅଗୋ ଚିତ୍ରା ଧୀରା । ୩ ।
ଚମ୍ପକଲତା—ଅଗଣାରେ ତମାଳ ରୋପିଛ ସ୍ନେହେ ଲୋଡ଼ି ?
ଶ୍ରୀରାଧା—ଏହିକ୍ଷଣି ତାକୁ ସଖି ! ଦିଅ ଗୋ ଉପାଡ଼ି । ୪ ।
ଇନ୍ଦୁରେଖା—ବଗିଚାରେ ଫୁଟାଫୁଲେ ବସିବ ଭ୍ରମର ?
ଶ୍ରୀରାଧା—କଢ଼କୁ ଛିଣ୍ଡାଇଦିଅ ନ କର ଉତ୍ତର । ୫ ।
ତୁଙ୍ଗବିଦ୍ୟା—ଶ୍ୟାମା ସଜନୀ ତ କାଳୀ, ଅଛନ୍ତି ସେବାରେ ?
ଶ୍ରୀରାଧା—ନିଷେଧ ତାହାକୁ, ପାଖ ନ ମାଡ଼ୁ ସେ ବାରେ । ୬ ।

ସୁଦେବୀ—ଅକାଶକୁ ଗୃହିଁବ ତ ଅଗୋ ଶ୍ରୀରାଧିକେ ?
ଶ୍ରୀରାଧା—ନ ଗୃହିଁବ ଅକାଶକୁ, ଜୀବ ଥିବାଯାକେ । ୭ ।
ରଙ୍ଗଦେବୀ—ଅଖି ଢୋଳା ମୋଡ଼ିକ ତ କଲା ଗୋ ସୁମୁଖି ?
ଶ୍ରୀରାଧା—ସବୁବେଳେ ରହିଥିବ ବୁଜି ଦୁଇ ଅଖି । ୮ ।
ଲଳିତା—ଅଖି ବୁଜିଲେ ଅନ୍ଧାର, ସେ ତ ଘୋର କଲା ?
ଶ୍ରୀରାଧା—ଦେଖି ତୋ ଶେଷ ଉପାୟ ମୋ ଦେହ ନ ଚଳା । ୯ ।
ଏହି ରତ୍ନମୁଦ୍ରିକାରେ ଅଛି ହୀରାକଣି ।
ଚୁମ୍ବି ଦେଇ ପ୍ରାଣ ହରାଉଛି ଏହିକ୍ଷଣି । ୧୦ ।

( ରତ୍ନମୁଦ ମୁଖରେ ଦେବାକୁ ଉଦ୍ୟତ )

ଲଳିତା—( ଚଞ୍ଚଳ ହସ୍ତକୁ ଧରି ପକାଇ କହିଲେ ) ରାଧେ ! ରାଧେ ! ଇଏ କଣ କରୁଚ ? ଛାର ମାନ ଲାଗି ପ୍ରାଣ ହରେଇ-ଦେବାକୁ ବସୁଚ ? ମାନିନି ! ଏ ବୁଦ୍ଧି ଛାଡ଼, ଦମ୍ଭ ଧର ।
ଶ୍ରୀରାଧା —( ତକ୍ଷଣୋଳା ଲେଉଟାଇ ମୂର୍ଚ୍ଛିତା )
ସଖୀଗଣ—( ଛାଟକା ହୋଇ ରୋଦନ କରିବା ଅଭିନୟ )

## ଗୀତ

ସଖି ! ସରିଲା ଅମ୍ଭ ଭରସା ।
କି ହେଲା ଗୋ ଜେମାଦେଈ ଦଶା ?
ସତେ ବଞ୍ଚିବେ କି ନୟନ ସଞ୍ଚାଳି,
ସୁକୁମାରୀ କିଶୋରୀ ସୁଦୃଶା, ଗୋ ସଖିଏ । ୧ ।

କି ଭଲ ଗୋ ଦାରୁଣ ଦଇବ ?
ଏହା ଦେଖି କା ହୃଦ ସହିବ ?
ଧିକ ଏ ଜୀବନ, ଧିକ ସଖୀପଣ,
ଧିକ ପ୍ରୀତି ଦୁଃଖ ଅନୁଭବ, ଗୋ ସଖି ଏ । ୨ ।

ଲଳିତା—ଧନି ! ସାମାନ୍ୟ କଥାକୁ ଏପରି କାହିଁକି ହୋଇଗଲ ? ସଚେତ ହୁଅ ।

( କର୍ଣ୍ଣ ଫୁଙ୍କିବା ଅଭିନୟ )

ଶ୍ରୀରାଧା—( ଦୀର୍ଘ ନିଶ୍ୱାସ ତ୍ୟାଗକରି ସଚେତ ହେଲେ )

ଲଳିତା—ହିଂଧିକେ ! ଏତେ କଷ୍ଟ କାହିଁକି ସହୁଛ ? ଶ୍ରୀକୃଷ୍ଣଙ୍କ ଠାରୁ ଏ ଶ୍ରେଷ୍ଠ ସ୍ଥାଡ଼ ସଖି !

ବିଶାଖା—ଧନି ! ଏ ଗୁମାନ କରି କେତେଦିନ ରହିବୁ ? ସଖି ! ଆମମାନଙ୍କ ପ୍ରାର୍ଥନା ରକ୍ଷାକର ।

## ଗୀତ

ଏ ଗୁମାନ କରି ଗୋରି ! ରହି ପାରିବୁ କି ରେ ?
ଟଳେ ହେଲେହେଁ ନାଗରୀ ନାଗରବରେ । ଘୋଷା ।
ବଂଶୀକି ଧରି　　　　　　ତୋରି ନାମ ଉଚ୍ଚାରି,
ଡାକିଲେ ତୁ ତା ପାଶକୁ ନ ଯିବୁ କି ରେ ? । ୧ ।
କୃଷ୍ଣ ଅଗରି　　　　　　ରହିବାକୁ କିଶୋରୀ !
ଯାହା ହୋଇଗଲାଣି ତୁ ଏଥି ମଧ୍ୟରେ । ୨ ।

ତା କଥା ନାଡ,                    ପଢ଼ିଲବେଳେ ଶୁତ—
ନୃପଳକୁ ଡେଉ ରହୁଥାଉ ପଗ ରେ ? । ୩ ।

ଲଳିତା—ମାନମୟି ! ତୁ ପଗ ବିବେକବତୀ ବୋଲାଉ ? ତୋତେ
ଏ ସ୍ୱାତ କଣ ଶୋଭାପାଏ ?

ଗୀତ

ସଖି ! ବିବେକବତୀ ପଗ ବୋଲାଉ ଗୋ ?
ନାଡ ନାଡ ଏ ସ୍ୱାତ କାହିଁ ଭିଆଉ ଗୋ ?
କାନ୍ତ ପ୍ରବେଶେ ଅପମାନ ଦିଅଉ ଗୋ । ଘୋଷା ।
ଗୁଛୁ କୁଟିଳବେଣୀ,                    ଗଣ୍ଡେ କର ନବେଣି,
ମୃଦୁ ନୟନ୍ ଲୋତକ ବରଷାଉ ଗୋ । ୧ ।

ସଖୀଗଣ—( ଅକୁଳଭାବରେ )

ଗୀତ

ପ୍ରିୟସଖି ! ହେଲ କି ଏହା ମୁନର ଗୋ ?
ଯାହା ଲଗି ତୋର,                    ଓଷା ବ୍ରତ ବାର,
ତାଙ୍କୁ ଭରଦେଲୁ ପର ଗୋ । ଘୋଷା ।
( ଯାକୁ ) ନ ଦେଖିଲେ ଦଣ୍ଡେ,                    କର ମଣ୍ଡି ଗଣ୍ଡେ;
( ତୁ ) ଅଧା ନୀରେ ଜର ଜର ଗୋ ।
ଅତ ଅକୁଳିତା,                    ହୋଇ ହେମଲତା;
ଭାଳୁଥାଉ ନିରନ୍ତର ଗୋ । ୧ ।

ଶ୍ରୀରାଧା—( କ୍ରୋଧରେ ଜର୍ଜ୍ଜରିତା ହୋଇ ) ସଖିଏ ଗୋ ! ମୁଁ ତମମାନଙ୍କ ଏତେ ପ୍ରକାରେ କହିଲି, ସେ ଲମ୍ପଟ କଥା ମୋତେ ଶୁଣାଅ ନାହିଁ ବୋଲି, ତାହା ଅବଜ୍ଞା କରି ପୁଣି ମୋ ଆଗରେ ପ୍ରକାଶ କଲ । ଏଥିପାଇଁ ଆଜଠାରୁ ତମମାନଙ୍କର ସବୁ ସେବା ମନା କଲି ।

## ଗୀତ

ଅଗୋ ଲଳିତେ ମୋର ପରାଣ ସହି !
ତାମ୍ବୁଲ ସେବା ତୋ'ର ଖଣ୍ଡିବୁ ନାହିଁ ଗୋ,
ପରାଣ ସହି ! । ୧ ।
ଅଗୋ ବିଶାଖେ ! ତୋତେ କଲି ମୁଁ ମନା ।
ଗନ୍ଧ ଚନ୍ଦନ ତୁ ମୋ ପାଶେ ଆଣନା ଗୋ,
କଲି ମୁଁ ମନା । ୨ ।
ଅଗୋ ମୋ ଚିତ୍ରା ସଖି ! ଦାଇନା ଦେନ ।
ନିଷେଧ କଲି ତୋର କୁଞ୍ଚାବସନ ଗୋ,
ଦାଇନା ଦେନ । ୩ ।
ଚମ୍ପକଲତା ! ତୋତେ କହୁଛି ମୁହିଁ ।
କଳା ଗୁମର ଅଜ ଢାଳିବୁ ନାହିଁ ଗୋ ,
ପରାଣ ସହି ! । ୪ ।
ତୁଙ୍ଗବିଦ୍ୟା ସଖି ଗୋ ! ମୋ କଥା ଦେନ ।
(ଅଜ) ନ କରିବୁ ମଙ୍ଗଳ ବୀଣା ବାଦନ ଗୋ,
ଏ ନିବେଦନ । ୫ ।

ହେ ସଖି ଇନ୍ଦୁରେଖା ! ନମଣି ଛନ୍ଦ ।
ତୋ ନୃତ୍ୟ ଗୀତ ସେବା କଲି ବାସନ୍ଦ ଗୋ,
ନମଣି ଛନ୍ଦ । ୬ ।
ଅହୋ ! ସୁଦେବୀ ସଖି ! କହୁଛି ତୋତେ ।
ସୁବାସ ଜଳ ଅଙ୍ଗ ନ ଦେଲୁ ମୋତେ ଗୋ,
କହୁଛି ତୋତେ । ୭ ।
ହେ ରଙ୍ଗଦେବୀ ମୋର ପ୍ରାଣ ମିତଣି !
ଭରି ତୁ ବନ୍ଦ ଅଙ୍ଗୁଁ ରାଗରଙ୍ଗିଣୀ ଗୋ,
ପ୍ରାଣ ମିତଣି ! ୮ ।

ସଖିମାନେ ! ଏବେ ଚଞ୍ଚଳ ମୋ ପାଖରୁ ଚାଲିଯାଅ, ମୁଁ ଯାଉଛି ଶୟନ ମନ୍ଦିରେ ଚିରଶୟନ କରି ସଭିଙ୍କି ପାଶୋରିବି ।

( ଚଞ୍ଚଳ ପ୍ରସ୍ଥାନ )

ବିଶାଖା—ଧନ୍ୟ ! ଧନ୍ୟ ! ଏ ଦାସୀମାନଙ୍କୁ କାହିଁକି ଏ ଦଣ୍ଡ ?

ଲଳିତା—ଜୀବନସଖୀଲୋ ! ତୋତେ ଛାଡ଼ି ଆମେମାନେ କେଉଁ ଆଡ଼େ ଯିବୁଁ ? ମାନିନି ! ଜଣକ ଦୋଷରେ ସମସ୍ତଙ୍କୁ ପର କରି ଚାଲିଦେବାଟା କଅଣ ଉଚିତ ହେଲା ? ଅହା ! ( ସଖୀମାନଙ୍କ ପ୍ରତି ) ସଖିଏ ଲୋ ! ଆସିବଟି—ସମସ୍ତେ ସେବା ପ୍ରାର୍ଥନା କରିବା ।

ସଖୀଗଣ—ଚାଲ ସଖି ! ଚାଲ ଚାଲ ।

( ବେଗେ ସମସ୍ତଙ୍କ ପ୍ରସ୍ଥାନ )

ପଟ୍ଟ ପରିବର୍ତ୍ତନ



# ଚତୁର୍ଥ ଅଙ୍କ

## ଦ୍ୱିତୀୟ ଦୃଶ୍ୟ

### ବୃନ୍ଦାବନ ପଥ

( ବନଦେବୀ ବୃନ୍ଦା ଦଣ୍ଡାୟମାନା )

ଶ୍ରୀକୃଷ୍ଣ—( ଅଶ୍ରୁମାର୍ଜ୍ଜନ କରି କରି ପ୍ରବେଶ )

ବୃନ୍ଦା—ମୋହନ ! ତୁମ୍ଭଙ୍କୁ ଏପରି ଦଶା କିଏ ଦେଲା ?
ନୀଳମଣି ! ତୁମ୍ଭ ମୁଖଚନ୍ଦ୍ରମାଟି ଏତେ ମଳିନ ଦିଶୁଛି କାହିଁକି ?
ନୟନରୁ ଧାର ଧାର ହୋଇ ଲୁହ ବହି ଯାଉଛି କାହିଁକି ?
ବିମ୍ବାଧରଟି ଶୁଖି ଯାଉଛି କାହିଁକି ?

ଶ୍ରୀକୃଷ୍ଣ—( ଅଶ୍ରୁଜଳରେ ) ବୃନ୍ଦେ ! ମୋ ଦୁଃଖ କହୁଛି; ଶୁଣ—

## ଗୀତ

ଶୁଣ ଶୁଣ ଅଗୋ ବୃନ୍ଦେ,　　　　　କେଉଁବଳ ପରାଣ ଛାନ୍ଦେ,
　　କିପରି ଲଭିବି ପ୍ରାଣେଶ୍ୱରୀ ।
ମୋହର କରମ ଦୁଷ୍ଟ,　　　　　କୃପାନିଧି ହୋଇ ବିଷ୍ଟ,
　　ଅପେ ମୁଁ ଅର୍ଜିଲି ଏଡ଼େ ଶିରୀ ଗୋ ।
　　　ବୃନ୍ଦେ ଗୋ ! କହ କି କରିବି କାହିଁ ଯିବି ?
　　　କି ଉପାୟେ ଧନୀକି ପାଇବି ଗୋ ?। ୧ ।
ସକଳ ଭରସା ତୁହି,　　　　　ମହା ଅପରାଧି ମୁହିଁ,
　　ସହଜେ କିଶୋରୀ କ୍ଷମାନିଧି ।

ରହୁବ ପରାଣ ମୋର,                    ଧନ୍ୟ କ୍ରୋଧ ହେବ ଦୂର,
ଦିଅ ମୋତେ ସଖୀ ! ଏହୁ ବୁଦ୍ଧି ଗୋ ।
ବୃନ୍ଦେ ଗୋ ! କି କହୁବ ମୋର କର୍ମ ବାଧା ।
ତେଜିଲା ପରାଣ ବନ୍ଧୁ ରାଧା ଗୋ । ୨ ।

ବୃନ୍ଦା—ଗୋକୁଳାନନ୍ଦ ! ତେମେ ତ ନିଜେ ଏହା ଅର୍ଜିଚ, ମୁଁ କଅଣ କରିବ ? ମୋତେ ଏଥିପେଇଁ କିଛି ବୁଦ୍ଧି ଦିଶୁନାହିଁ ।

ଶ୍ରୀକୃଷ୍ଣ—ତେବେ ଯାଉଛି, କାଳିନ୍ଦୀକି ଡେଇଁ ପ୍ରାଣ ହରେଇଦେବି ।

ବୃନ୍ଦା—ନୀଳମଣି ! ଏହା କହନା; ମୁଁ ପୌର୍ଣ୍ଣମାସୀ ଭଗବତୀଙ୍କି ଧ୍ୟାନ କରେଁ, ସେ ଏହାର ପ୍ରତିକାର କରିବେ ।

( କର ଯୋଡ଼ି ଧ୍ୟାନ କରିବା )

( ପୌର୍ଣ୍ଣମାସୀଙ୍କ ପ୍ରବେଶ )

ଶ୍ରୀକୃଷ୍ଣ—( କାନ୍ଦି କାନ୍ଦି ପ୍ରଣାମ କରିବା )

ପୌର୍ଣ୍ଣମାସୀ—ବୃନ୍ଦାବନଚନ୍ଦ୍ର ! ତମର ଇଏ କି ଦଶା ? ଆହା ! ସୁକୁମାର ଅଙ୍ଗଟି ଝାଉଁଳିଲା ନବ ତମାଲ ପରି ଶୋଭାହୀନ ଦିଶୁଚି କାହିଁକି ? ( ବୃନ୍ଦାଙ୍କୁ ଚାହିଁ ) ବୃନ୍ଦେ ! ନନ୍ଦନନ୍ଦନଙ୍କର ଆଜ ଏପରି ଅବସ୍ଥା କିଆଁ ?

ବୃନ୍ଦା—( ଅକୁଳତା ଭାବେ ) ଭଗବତ ! ରାଧାର ଦୁର୍ଜ୍ଜୟ ମାନ ହେତୁ ।

ପୌର୍ଣ୍ଣମାସୀ—ନୀଳମଣି ! ତେମେ ରାଧାର ପ୍ରାଣ, ରାଧା ତମର ପ୍ରାଣ । ଏବେ କହୁଚ ଶୁଣ । ଚନ୍ଦ୍ରାନନ ! କପ୍ରାଳାପରେ ମହାମାନ, ଅଜ ପଶ୍ଚାତ୍ତାପରେ ଅଳାପନ, ଏ ସବୁ ଦୁର୍ଜ୍ଜୟମାନର ଲକ୍ଷଣ । ମୋହନ ! ଅକୁଳରେ ଅନୁକୂଳ ଅଛୁ, ଏଣିକି ତୁମର ମୋଦ ଇନ୍ଦୁ ଉଦୟ ହେବ । ଅଜ ଅକୁଳତ ହୁଅନା । ମୁଁ ଯାଉଛୁ, ବୃନ୍ଦାର ଅଦେଶ ଅନୁସାରେ କାର୍ଯ୍ୟ କର ।

( ପ୍ରସ୍ଥାନ )

ଶ୍ରୀକୃଷ୍ଣ—ବୃନ୍ଦେ ! ପୌର୍ଣ୍ଣମାସୀ ତ ଏପରି କହିଗଲେ, ମୁଁ ଏବେ କଅଣ କରିବ ?

ବୃନ୍ଦା—ମୋହନ ! ମୁଁ ଗୋଟିଏ ଉପାୟ କହିବ, ତା କରି ପାରିବ କି ?

ଶ୍ରୀକୃଷ୍ଣ—କଅଣ କହ ବୃନ୍ଦେ !

ବୃନ୍ଦା—ତମେ ରାଧାର ପ୍ରିୟସଖୀମାନଙ୍କ ନିକଟକୁ ଯାଇ ପ୍ରାର୍ଥନା କର । ସେମାନେ ପଦେ ଅଧେ କହି ମାନିନୀର ମାନ ତୁଟେଇ ପାରନ୍ତି । ତମେ ଯାଅ, ମୁଁ ଶ୍ରୀକୁଣ୍ଡଠାକୁ ଯାଉଚି ।

( ଏକ ଦାଗରେ ଶ୍ରୀକୃଷ୍ଣ ଓ ଅନ୍ୟ ଦାଗରେ ବୃନ୍ଦାଙ୍କର ପ୍ରସ୍ଥାନ )

ପଞ୍ଚ ପରିବର୍ତ୍ତନ



# ଚତୁର୍ଥ ଅଙ୍କ

## ତୃତୀୟ ଦୃଶ୍ୟ

### ଲଳିତାଙ୍କ ଭବନ

( ସଖୀମାନଙ୍କ ସହିତ ଲଳିତା ରାଧାଙ୍କ ଦୁଃଖ ଭାବି ବସିଥିବା )

**ଗୀତ**

ସତେ ପାଲଟିବ ଅନ୍ତ ଦୁର୍ଦ୍ଦଶା ।
କଣ ଗୋଟି କାହ୍ନୁ ଦିଲ ଖେଳିବେ ପଶା ଗୋ ।
ପ୍ରାଣସଙ୍ଗିନି !
ସତେ କି ଦେଖିବା ସେ ଯୁଗଳ ଠାଣି ଗୋ । ୧ ।
ଦେଖିବା ମଳିନ ପଙ୍କଜ ମୁଖ ।
ସତେ କି ବଧାତା ହରିବ ଦୁଃଖ ଗୋ ।
ଏ ପାପନୟନ ।
ଚରଣରେ ହୋଇବ ସତେ ପବନ ଗୋ । ୨ ।
ପଞ୍ଚଶ୍ର ମଣାଇ କୁଞ୍ଜକୁ ନେବା ।
ଅଭିସାରେ କି ପାଦେଡ଼ା ପାଇବା ଗୋ ।
ପ୍ରାଣସଙ୍ଗିନି !
ସତେ କି ଦେଖିବା ସେ ଯୁଗଳ ଠାଣି ଗୋ । ୩ ।
ହୁଳହୁଳି ଦେବା ସକଳେ ମିଳି ।
ବୃନ୍ଦାବନ ପଡ଼ିଥିବ ଉଚ୍ଛୁଳି ଗୋ ।

କେବେ ସ୍ୱା ହେବ ?

ତେବେ ସଖୀପଣ ସାଥ ହୋଇବ ଗୋ । ୪ ।

ଲଲିତା—ସଖିଏ ଲୋ ! ଆମମାନଙ୍କ କରମ ତ ପୋଡ଼ା, ଆଉ ଯୁଗଳ-ମୂରତଙ୍କ ମିଳନ ଶୋଭା କାହୁଁ ଦେଖିବା ?

ବିଶାଖା—ସଖି ! ଦଶା ପଡ଼ବେଳେ ସବୁ ଏଇପରି ।

ଚମ୍ପା—ସଖି ! ଆଉ କଣ କିଶୋରୀଙ୍କ ପ୍ରସନ୍ନ ମୁଖ ଏ ପାପ ଆଖି ଦେଖିବ ?

ଚମ୍ପକଲତା—ସଖି ! ଆଉ କଣ ରାଧା ନାମରେ ବଂଶୀ ବାଜିବ ?

ଇନ୍ଦୁରେଖା—ସଖି ! ଆଉ କଣ ଯମୁନା ଉଜାଣି ବହିବ ?

ତୁଙ୍ଗବିଦ୍ୟା—ସଖି ! ଆଉ କଣ ବୃନ୍ଦାବନରୁ ଫୁଲ ତୋଳିବା ?

ରଙ୍ଗଦେବୀ—ସଖି ! ଆଉ କଣ ବସନ୍ତ ବୋଇଲି ଡାକିବ ?

ସୁଦେବୀ—ସଖି ! ଆଉ କଣ ଶୁଆ ଶାରୀ ଦୁହିଁଙ୍କ କନ୍ଦଳ ଶୁଣିବା ?

ଲଲିତା—ସଖିଏ ଲୋ ! ଭାଗ୍ୟ ଲେଖିଥିଲେ ଏମାନ ହେବ ଅବା ।

ଚମ୍ପା—ସଖି ! ଏ ଝୁମ୍ ଝୁମ୍ ନୂପୁର ଧ୍ୱନି କା'ର ଶୁଭୁଚି ମ ?

ବିଶାଖା—( ଟିକିଏ ଗୁହିଁ ଦେଇ ) ସେଇ ଗୋ ! ସେଇ ଧୂର୍ତ୍ତ ଲମ୍ପଟ ଆସୁଛନ୍ତି ।

ଶ୍ରୀକୃଷ୍ଣ—( କାନ୍ଦ କାନ୍ଦ ଅଶ୍ରୁମୁଖନ କରି ପ୍ରବେଶ )

ଲଳିତା—ଲମ୍ପଟ ! ଆମ ଜେମାମଣିଙ୍କି ତ ଏତେ ଅବସ୍ଥା ହେଲା, ଆଉ କୁଆଡ଼େ ଅସୁଚ ? ଯାଅ, ତେଣେ ଯାଅ ।

ସଖୀଗଣ—( ଏକଧାଡ଼ ହୋଇ ଠିଆହେବା ଅଭିନୟ )

ଶ୍ରୀକୃଷ୍ଣ—( ବନସ୍ୱରେ )

## ଗୀତ

ଅଗୋ ସଖୀଗଣ,　　　ମୋର ନିବେଦନ,
ସୁଚିତ୍ତେ ଶ୍ରବଣ କର ।
ମହା ମାନମୟୀ,　　　ବିନୋଦିନୀ ରାଇ—
ବିନେ ଜୀବ ଯିବ ମୋର ।
ଆଜ ବଞ୍ଚିବ ନାହିଁ । ପ୍ରତିକାର କର ସର୍ବ ସହି । ୧ ।
ଯେଉଁ ଦିନୁ ଧନୀ,　　　ହୋଇଛନ୍ତି ମାନିନୀ,
ସେଦିନୁ ଗଲଣି ସବୁ ।
କେବଳ ଜୀବନ,　　　ରହିଅଛି ପିଣ୍ଡେ,
ପୂର୍ବ ପ୍ରୀତି ଲଭି ଲୋଭୁଁ ।
ଗାଢ ମାନ ତୁଟାଇ । ଏ ଜୀବନ ରଖ ପ୍ରିୟ ସହି । ୨ ।

( ଲଳିତାଙ୍କ ପ୍ରତି ) ଲଳିତେ ! ମାନମୟୀର ମାନ ତୁଟାଇ ଏ ଜୀବନ ରଖ ।

ଲଳିତା—ନଟକୁଟିଆ ହେ ! ଶୁଣ :—

## ଗୀତ

ଶୁଣ ହେ ନାଗର,　　　ତୁମ୍ଭ ଲାଗି ମୋର,
ତାମ୍ବୁଲ ସେବାରେ ବାଧା ।
ପଢ଼ଣ ବଢ଼ଉଅ,　　　ସରି ଯାଉଅଛୁ,

ମଣୋହି ନ କରେ ରାଧା ।

ମୁଁ ପାରିବି ନାହିଁ ହେ !

ମାନିନୀ ମାନ ତୁଟାଇ ( ପାରିବି ନାହିଁ ହେ )

ପଚ୍ଛର, ପଚ୍ଛର ( ବିଶାଖା ସଖୀଙ୍କ ବନ୍ଧୁ ! ) । ୧ ।

ଶ୍ରୀକୃଷ୍ଣ—( ବିଶାଖା ନିକଟକୁ ଯାଇ ବିନମ୍ରରେ କହିଲେ )

ସଖି ବିଶାଖେ ! ମାନମୟୀର ମାନ ତୁଟାଇ ଏ ଜୀବନ ରଖ ।

ବିଶାଖା—ଲମ୍ପଟିଆ ହେ ! ଶୁଣ :—

ଗୀତ

ଶୁଣ ହେ ନାଗର, ତୁମ୍ଭ ଲାଗି ମୋର,
ନିଜ ସେବା ଆଉ ନାହିଁ ।
ଗନ୍ଧଚନ୍ଦନ ମୋ ଘଟିବା ତୁଟିଛି,
ମୋ ହାତେ ଏହା ନୁହଇ ।
(ଏବେ) ମୋ ପାଶରୁ ଯାଅ ହେ ।
(ଏ) ଚିତ୍ରା ସଙ୍ଗିନୀକି କହ । ୨ ।

ଶ୍ରୀକୃଷ୍ଣ—( ଚିତ୍ରା ପାଶକୁ ଯାଇ ବିନମ୍ରରେ )

ସଖି ଚିତ୍ରେ ! ତୋ ବିଚିତ୍ର କୌଶଳରେ ମାନମୟୀର ମାନ ତୁଟାଇ ମୋ ଜୀବନ ରଖ ।

ଚିତ୍ରା—କପଟିଆ ହେ ! ଶୁଣ :—

ଗୀତ

ଶୁଣ ହେ ନାଗର, ଲମ୍ପଟଶେଖର,
ମୋହଠାରେ କାର୍ଯ୍ୟ ନାହିଁ ।

ତୁମ୍ଭ ଲାଗି ମୋର,                    ନୀଳବାସ ସେବା
ଶୂନ୍ୟ ହୋଇଛନ୍ତି କହ୍ନାଇ !
ମୋ ପାଖରୁ ଯାଅ ହେ !
ଚମ୍ପକଲତାକୁ କହ । ୩ ।

ଶ୍ରୀକୃଷ୍ଣ—( ଚମ୍ପକଲତା ପାଖକୁ ଯାଇ କରୁଣସ୍ୱରେ )
ସଖି ! ମାନମୟୀର ମାନ ତୁଟାଇ ଏ ଜୀବନ ରଖ ।

ଚମ୍ପକଲତା—ନଟନାଗର ହେ ! ଶୁଣ :—

ଗୀତ

ଶୁଣ ହେ ନାଗର,                    ମୋଠାରେ ତୁମ୍ଭର,
କାର୍ଯ୍ୟ ନାହିଁଟି ଗୋବିନ୍ଦ !
ତୁମ୍ଭ ଲାଗି ମୋର,                    ଏ କୃଷ୍ଣ ଚାମର,
ସେବା ହୋଇଅଛି ବନ୍ଦ ।
ମୋ ପାଖରୁ ଯାଅ ହେ !
ଇନ୍ଦୁରେଖାକୁ ବୁଝାଅ । ୪ ।

ଶ୍ରୀକୃଷ୍ଣ—( ଇନ୍ଦୁରେଖା ପାଖକୁ ଯାଇ କରୁଣସ୍ୱରେ )
ସଖି ! ମାନମୟୀର ମାନ ତୁଟାଇ ଏ ଜୀବନ ରଖ ।

ଇନ୍ଦୁରେଖା—ମୋହନ ହେ ! ଶୁଣ :—

ଗୀତ

ଶୁଣ ହେ ମୋହନ,                    କିଶୋରୀ ରତନ
ମାନ ଅତି ଗୁରୁତର ।

ତୁମ୍ଭ ଲାଗି ବନ୍ଧୁ,　　　　ଦରଶନ ସେବା,
ସ୍ୱପନ ହେଲାଣି ମୋର ।
(ବନ୍ଧୁ) ମୋ ପାଶରୁ ଯାଅ ହେ ।
ତୁଙ୍ଗବଦ୍ୟା ପାଶେ କହ । ୪ ।

ଶ୍ରୀକୃଷ୍ଣ—( ତୁଙ୍ଗବଦ୍ୟା ପାଖକୁ ଯାଇ ବିନୟରେ )
ସଖି ! ମାନିନୀର ମାନ ତୁଟାଇ ଏ ଜୀବନ ରଖ ।

ତୁଙ୍ଗବଦ୍ୟା—ନାଗର ହେ ! ଶୁଣ :—

### ଗୀତ

ଶୁଣ ହେ ନାଗର,　　　　ଏବେ ମୋର ଗିର,
ସଇ ମାନ ଗୁରୁତର ।
ତୁମ୍ଭ ଲାଗି ବନ୍ଧୁ,　　　　ଡମ୍ଫ ବାଦ୍ୟ ସେବା,
ଦୂର ହୋଇଛି ମୋହର ।
ମୋ ପାଶରୁ ଯାଅ ହେ !
ସୁଦେବୀ ସଖୀରେ କହ । ୬ ।

ଶ୍ରୀକୃଷ୍ଣ—( ସୁଦେବୀ ପାଖକୁ ଯାଇ ବିନୟରେ ),
ସଖି ! ମାନମୟୀର ମାନ ତୁଟାଇ ଏ ଜୀବନ ରଖ ।

ସୁଦେବୀ—ଖଣ୍ଟ ଲମ୍ପଟ ହେ ! ଶୁଣ :—

### ଗୀତ

ଶୁଣ ହେ ନାଗର,　　　　ଖଣ୍ଟ ନଟବର,
ମୋ ହାତେ ନୁହଇ କିଛି

ତୁମ୍ଭ ଲାଗି କର,                ହେମ ଜଳଧର,
ସେବା ମୋ ଶୂନ୍ୟ ହୋଇଛି ।
ବନ୍ଧୁ ଯାଅ ଯାଅ ହେ ।
ରଙ୍ଗଦେବୀଙ୍କ ବୁଝାଅ । ୭ ।

ଶ୍ରୀକୃଷ୍ଣ—( ରଙ୍ଗଦେବୀ ପାଖକୁ ଯାଇ ବିନୟେ )
ସଖି ! ମାନବତୀର ମାନ ତୁଟାଇ ଏ ଜୀବନ ରଖ ।

ରଙ୍ଗଦେବୀ—ମୋହନ ହେ ! ଶୁଣ :—

ଗୀତ

ଶୁଣ ହେ ମୋହନ,                ଗୋପନା ରତନ,
ବହୁଛି ଦୁର୍ଜ୍ଜୟ ମାନ ।
ତୁମ୍ଭ ଲଗି ମୋର,                ପାଶୋର ଗଲଣି,
ଲଳିତ ନର୍ତ୍ତନ ଗାନ ।
ଯାଅ ଯହିଁ ତହିଁ ହେ ।
ମୋ ହାତେ ଏହା ନୁହଇ । ୮ ।

ଶ୍ରୀକୃଷ୍ଣ—( ଅକୁଳରେ ) ହାୟ ! ହାୟ ! !
( ଏହି ଅର୍ଦ୍ଧୋକ୍ତିରେ ଉର୍ଦ୍ଧ୍ୱକୁ ଗୃହିଁ ଛଳ ଛଳ ନେତ୍ରେ ରହିଗଲେ )

ଲଳିତା—ମୋହନ ! ଆଜ ଅକୁଳ ହେଲେ କ'ଣ ହେବ ? ଏବେ ସାର କଥା ଶୁଣ ।

ସମସ୍ତେ—( ସମସ୍ୱରେ ଗୀତଛଳେ କହିଲେ )

## ଗୀତ

ସଖି ମାନ-ଅଗ୍ନି ଏବେ ପ୍ରବଳ ଜଳଇ ।
ତୁମ୍ଭ ଏ ବଚନସ୍ତୁ ଘୃତ କଏ ଦେବ ଢାଳି ?
ନଟ ନାଗର ହେ ! ରସସାଗର ହେ ! । ୧ ।

କୁ କାସ୍ୱଧ ଶବଦେ ଯେ କର୍ଣ୍ଣକୁ ମଦୁଛୁ ।
ଅପଣା କେଶକୁ ବଷ ସମାନ ମଣୁଛୁ ।
ନଟ ନାଗର ହେ ! ରସସାଗର ହେ ! । ୨ ।

ନୀଳ ବାସ ନୀଳ ପୁଷ୍ପ କଜ୍ଜ୍ୱଳ କସ୍ତୁରୀ ।
ମାନିନୀ ମାନୁଛି ତାକୁ ହୁତାଶନ ପରି ।
ନଟ ନାଗର ହେ ! ରସସାଗର ହେ ! । ୩ ।

ଯମୁନା ପାଣିକି ଅଜ ଯାଉନାହିଁ ଧନୀ ।
ନେତ୍ରେ ଦେଖୁନାହିଁ କ୍ଷଣେ ଅନ୍ଧାର ରଜନୀ ।
ନଟ ନାଗର ହେ ! ରସସାଗର ହେ ! । ୪ ।

ଶ୍ୟାମା ସଖୀଙ୍କି ପାଶରୁ କଲଣି ଅନ୍ତର ।
ଫିଙ୍ଗି ଦେଇଛି କଣ୍ଠରୁ ନୀଳମଣି ହାର ।
ନଟ ନାଗର ହେ ! ରସସାଗର ହେ ! । ୫ ।

ମରକତ ଚୂଡ଼ି ତେଜି ସୁବର୍ଣ୍ଣ ଚୂଡ଼ିକି ।
ଆଦର କରି ପିନ୍ଧିଛି ଅଳନମମୁଖୀ ।
ନଟ ନାଗର ହେ ! ରସସାଗର ହେ ! । ୬ ।

ଅତି ଯତ୍ନେ ପାଳିଥିଲୁ ଯେ ଶୁକ ଶାରୀଙ୍କି ।
ଉଡ଼ାଇ ଦେଲଣି ତାଙ୍କୁ ଭାଙ୍ଗି ପିଞ୍ଜରାକୁ ।
ନଷ୍ଟ ନାଗର ହେ ! ରସସାଗର ହେ ! । ୭ ।
ଯେ ପୋଷିଥିବା ତମାଳକୁ ଓପାଡ଼ି ଦେଲଣି ।
ବୃକ୍ଷ ଉପରେ ପୁଷ୍ପ ଲତା ଉଙ୍କ ମୋଡ଼ିଲଣି ।
ନଷ୍ଟ ନାଗର ହେ ! ରସସାଗର ହେ ! । ୮ ।
ନ କରେ ଗ୍ରହଣ ନବ ଇନ୍ଦୀବର ମାଳ ।
ଖଦୀର ଯୋଗୁଁ ଚର୍ବଣ ନ କରେ ତାମ୍ବୁଳ ।
ନଷ୍ଟ ନାଗର ହେ ! ରସସାଗର ହେ ! । ୯ ।
ତବ ରୂପ ଚିତ୍ରପଟେ ଚନ୍ଦନ ଲେପିଛୁ ।
ନୀଳ ଆକାଶକୁ ଗୃହୁଁ କ୍ରୋଧରେ କମ୍ପୁଛୁ ।
ନଷ୍ଟ ନାଗର ହେ ! ରସସାଗର ହେ ! । ୧୦ ।

ଲଳିତା—ନୀଳମଣି ! ତେବେ ନିଜ କର୍ମକୁ ଅଦର ଯାଅ, ଏବେ ଅମ୍ଭେମାନେ ଯାଉଛୁଁ । ମାନମୟୀଙ୍କ ତମଲାଗି ପଦେ-ଅଧେ ବୁଝେଇ ସୁଝେଇ କହିବୁ, ତେଣିକି ତବ କର୍ମରେ ଯାହା ଥିବ ।

( ଏକ ଦିଗରେ ସଖୀଗଣ, ଅନ୍ୟ ଦିଗରେ ଶ୍ରୀକୃଷ୍ଣ ପ୍ରସ୍ଥାନ )

ଦୃଶ୍ୟ ପରିବର୍ତ୍ତନ



# ଚତୁର୍ଥ ଅଙ୍କ

## ଚତୁର୍ଥ ଦୃଶ୍ୟ

### ବନପଥ

( ଭଗବତୀ ପୌର୍ଣ୍ଣମାସୀଙ୍କ ପ୍ରବେଶ )

ପୌର୍ଣ୍ଣମାସୀ—( ସ୍ୱଗତଃ ) ବନମାଳୀଙ୍କର ଅଦ୍ଭୁତ ଲୀଳା । ଏ ଲୀଳାର ରହସ୍ୟ ବ୍ରଜ ଅନୁଗତ ବିନା ଅନ୍ୟ କିଏ ବୁଝି ପାରିବ ? ଭକ୍ତବତ୍ସଳ ଭକ୍ତ ଭାବରେ ଯେ କେତେବେଳେ କିଅଣ ହୁଅନ୍ତି, ତାହା ସେହି ଲୀଳାମୟ ଏକା ଜାଣନ୍ତି । ଅଜ ବୃନ୍ଦାବନ ବିହାରିଣୀ ଶ୍ରୀରାଧା ଲାଗି ବୃନ୍ଦାବନଚନ୍ଦ୍ର କି ଦୁଃଖ ସହୁ ନାହାନ୍ତି ସତେ ? ଯାହା ହେଉ, ଏଣିକି ଭାବବିନୋଦିଆ ନବରଙ୍ଗିଆ କାହ୍ନୁଙ୍କ ତୁଲେ ପ୍ରେମମୟୀ ମହାମାନିନୀକି ନିକୁଞ୍ଜରେ ମାନ ମିଳନ କରାଇବାର ଚେଷ୍ଟା କରିବି । ଏବେ ଯାଏଁ ।                    ( ପ୍ରସ୍ଥାନ )

ପଞ୍ଚ ପରିବର୍ତ୍ତନ



# ଚତୁର୍ଥ ଅଙ୍କ

## ପଞ୍ଚମ ଦୃଶ୍ୟ

## ଶ୍ରୀକୃଷ୍ଣ ଉଠ

( ଶ୍ରୀକୃଷ୍ଣ ଏବଂ ବୃନ୍ଦାଙ୍କ ପ୍ରବେଶ )

ବୃନ୍ଦା—ନୀଳମଣି ! ସଖୀମାନଙ୍କ ପାଖକୁ ଯାଇଥିଲ ?

ଶ୍ରୀକୃଷ୍ଣ—ହଁ, ଯାଇଥିଲି ।

ବୃନ୍ଦା—ସେମାନେ କଅଣ କହିଲେ ବନ୍ଧୁ ?

ଶ୍ରୀକୃଷ୍ଣ—( ଲୁହ ପୋଛୁ ପୋଛୁ ) ସେମାନେ କଟୁଣ ବାଣୀ କହି ଗୁଲଗଲେ । କହ ବୃନ୍ଦେ ! ମୁଁ କି ଉପାୟ କରିବ ?

ବୃନ୍ଦା—ଗୋପସଙ୍ଖାଳ ! ଏଥିପେଇଁ ଚିନ୍ତା କରନାହିଁ । ଭଗବତୀଙ୍କ କୃପାରୁ ମୋତେ ଗୋଟିଏ ସୁନ୍ଦର ଉପାୟ ଦିଶୁଛି; ତା କରିପାରିବ କି ?

ଶ୍ରୀକୃଷ୍ଣ—କଅଣ କହ ବୃନ୍ଦେ !

ବୃନ୍ଦା—ତେବେ ଶୁଣ :—

### ଗୀତ

ସାଜ ହେ ମାଳିନୀ,                କିବା ନାପିତୁଣୀ,
କିବା ରଜକନୀ ବେଶ ।
କିବା ଶବରଣୀ,                ଗାୟୁଣୀ, ବାୟୁଣୀ,
ପାଟଖଣୀର ସୁବେଶ ।
କିବା ମାୟା ବେଲୁଣୀ ।
ବେଶ ଧୃଅ ନୀଳମଣି । ୧ ।

ଶ୍ରୀକୃଷ୍ଣ—ବୃନ୍ଦେ ! ଏ ବେଶ ମଧ୍ୟରୁ ଅଗେ ମାଲିନୀ ବେଶଟି ମୋତେ
ସଜାଇ ଦିଅ, ସଖି !

ବୃନ୍ଦା—ଅସ ତେବେ ।                                        ( ଦୁହେଁ ପ୍ରସ୍ଥାନ )

ପଟ୍ଟ ପରିବର୍ତ୍ତନ



## ଚତୁର୍ଥ ଅଙ୍କ

### ଷଷ୍ଠ ଦୃଶ୍ୟ

ଶ୍ରୀରାଧାଙ୍କ ଭବନ

( ମାନମୟୀ ଶ୍ରୀରାଧା ଗଣ୍ଡରେ କର ଦେଇ ବସିଥିବା, ସଖୀଗଣ
ପ୍ରବୋଧି କରୁଥିବା ଅଭିନୟ )

ଗୀତ

କ୍ଷୀଣ ହେଲା ତନୁ,                    ଚକ୍ଷୁ ହେଲା ନାହିଁ,
କି ହୋଇଗଲୁ କିଶୋରୀ ଗୋ ।
ତେଜିଲୁ ଶୟନ,                    ଭୂଷଣ ଭୋଜନ,
ମାନ-ବଶେ ହୋଇ ଘାରି ଗୋ ।
ଅକାରଣେ ସୁକୁମାରୀ ।
ରାଜନନ୍ଦିନୀ କର ବିଗ୍ଦ୍ଧାରି ଗୋ । ୧ ।

ଧରି ଶୟନରେ,                    ସରିଇଲି ଦିନ,
ପରାଣେ ନ ରହି ଆଶା ଗୋ ।
ସରାଗ ଛାଇଁରେ,                    ପରି ନ ରହିଲି,
ହରାଇ ପୁଣି ଭରଷା ଗୋ ।
ଥରାଇଲି ତନୁ ତୋର ।
ଝରାଇଲି ନେତ୍ର ନୀର ଧାର ଗୋ । ୨ ।

ଶ୍ରୀରାଧା—( ମନନରେ ଅବନତମୁଖୀ ହେବା ଅଭିନୟ )

ଲଲିତା—ରାଧେ ! କଲାକାହ୍ନୁ ଆଜ ତମ ଲାଗି ଆମମାନଙ୍କୁ କେତେ ପ୍ରାର୍ଥନା କରି କହୁଛନ୍ତି । ତାଙ୍କଠାରୁ ଏ ରୋଷ ଛାଡ଼ ସଖି !

ଶ୍ରୀରାଧା—( କ୍ରୋଧରେ ) ନା, ସଖି ! ମୋତେ ଆଉ ସେ ମୋହନ କଥା କହନା ।

## ଗୀତ

ମୋହନା ବାଜ; ସହି ! କହ ନା ଆଉ ଲୋ । ଘୋଷା ।
ସହୁଛି ମୁଁ ଯେତେ,                    କେ ସହିବ ଏତେ,ଗୋ ?
ଶଠପୀରତି ନୋହିଲେ ମୋ ନୋହୁ ଲୋ । ୧ ।
ତା ସଙ୍ଗରେ ମାତି,                    ହରାଇଲି ଜାତି ଗୋ,
ଏବେ ଡେଇଲି ତୋ କହୁବା ଥାଉ ଲୋ । ୨ ।
ମୋ ସୁଖେ ମୁଁ ଭୁଜି,                    ହେଲିଣି ସଜନି ଗୋ !
ମନ ଭୁଲାଇ କେତେ ସମଯାଉ ଲୋ । ୩ ।

ଲଳିତା—ଚନ୍ଦ୍ରାବଳି ! ଏତେବେଳେ ସିନା ସ୍ତ୍ରୀ କହୁଛ ! ସେହି ଶ୍ୟାମ ନାଗରଙ୍କୁ ଦିନେ ହେଲେ ଯାଚି ହୋଇ କଥା କହିବ ଯେ, ସ୍ତ୍ରୀ ମନେ ରଖିଥାଅ ।

## ଗୀତ

ଯାଚି ହୋଇ କଥା କହିଲୁ ଦିନେ ଗୋ ।
କିଶୋରି ! ଏହା ରଖିଥା ମନେ ଗୋ । ଘୋଷା ।

ଲଳିତ ତ୍ରିଭଙ୍ଗୀ ମୂରତିଟିକି ।
ଭାଳକି ପଶୋର ପାରୁଛି କି ଗୋ ? । ୧ ।

ବାଜିଲା ବେଳରେ ମୋହନ ବଂଶୀ ।
ଏ ଗୃମାନ ଦମ୍ଭ ପଡ଼ିବ ଖସି ଗୋ । ୨ ।

କ୍ଷଣେ ନ ଦେଖିଲେ ଯାହାକୁ ସଖୀ !
ଥରକୁ ଥର ପଠାଉ ଅଳୀଙ୍କି ଗୋ
(ତୁ ତ) କୋଡ଼ିଏ ଥର ପଠାଉ ଅଳୀଙ୍କି ଗୋ । ୩ ।

ଅଜ ଦିନେ ମାନ କରି ତ ଥିଲୁ ।
ଯାଉଁ କୁଞ୍ଜବନେ କି ହୋଇଗଲୁ ଗୋ ? । ୪ ।

ମନେ ନ ଥିବ କି ସେଦିନ କଥା ?
ମାନ ଛେଜ ଧନି ! ନ ପୋତ ମଥା ଗୋ । ୫ ।

ଚନ୍ଦ୍ରାବଳୀ—ରାଧେ ! ଏଣିକି ସବୁ ସୁଖ ସରଯିବ ସିନା ?

( ଗୀତ ଗାଇ ଗାଇ ମାଳମା ବେଶେ ଶ୍ରୀକୃଷ୍ଣ ପ୍ରବେଶ )

## ଗୀତ

ବ୍ରଜ ମୋହନୀ ମାନନୀ ରାଧେ ଚନ୍ଦ୍ରୋଦନୀ !
ଆଣିଛି କୁସୁମ-ହାର ରଖ ଗୋବିନ୍ଦ ଭାବନୀ । ଘୋଷା ।

ଅସ ଗୋ ସତୀ ସାଧବୀ, ବନଫୁଲେ ସାଜ ଦେବ,
ରସେ ମନ ମଜ୍ଜାଇବ, ତୋଷେ ଗୋ ବ୍ରଜନନ୍ଦନୀ ।୧।
ଆଣିଛି ଯତନେ ଗୁନ୍ଥି, କୁନ୍ଦ ମରୁଆ ସେବତୀ,
ବଉଳ ମଲ୍ଲୀ ମାଳତୀ, ଦେଖ କି ସୁନ୍ଦର ଧନି । ୨ ।
ଜାଇ ଯୁଈ କୁରୁଅନା, ମାଧବୀ ଚମ୍ପା ଦମୟଣା,
କି ଶୋଭା ଦେଖ ନାଅଳୀ ଏ ପାରିଜାତ ରଙ୍ଗିଣୀ । ୩ ।
ଫୁଲରେ ସୁବେଶ ହୁଅ, ମୂଲ୍ୟ ପଛକେ ନ ଦିଅ,
ସୁଲଭ ତୁମ୍ଭଙ୍କୁ ସିନା, ତୁଳରେ ଯିବଟି ମାନି । ୪ ।

ଲଳିତା—ଅଗୋ ଫୁଲବାଲି ! ଆଜି କି କି ଫୁଲ ଅଣିଚ ?

ମାଳମା—କହୁଚି ଶୁଣ :—

## ଗୀତ

ଆଣିଛି କେତକୀ ଝରା, ସଜ କୁସୁମ ଗଜରା
ବନମାଳା ବୈଜୟନ୍ତୀ, ଯତନେ ଗୁନ୍ଥି ଗୋ । ୧ ।
ଆଣିଛି ଚନ୍ଦନ ଟଗର, କନିଅର ନାଗେଶ୍ୱର,
ସୁଗନ୍ଧରାଜ କଞ୍ଚନ, ସ୍ଥଳ-ନଳିନ ଗୋ । ୨ ।

ଅଣିଚ ରଙ୍ଗ ବଧୂଲୀ,                    ଚନ୍ଦ୍ରମଲ୍ଲୀ କୁରୁବେଲ,
ଅଶୋକ ଅପରାଜିତା, ଅତି ଶୋଭିତା ଗୋ ୩ ।
ଅତଶୀ ଫୁଲେ ମିଶାଇ,                    ଗୁନ୍ଥିଛୁ ଉରଚ ମୁହିଁ,
ଏ କେଳି କଦମ୍ବ ମାଳ, କେତେ ମଞ୍ଜୁଳ ଗୋ । ୪ ।

ଲଳିତା—ମାଳିନି ଗୋ ! ତୋ କରମ ବଡ଼ ଗୁଣୀ ।

ମାଳତୀ— କାହିଁକି ?

ଲଳିତା—ଆମ ରାଧାରାଣୀ ପରି ଦୁର୍ଲ୍ଲଭମାନିନୀ, ଫୁଲ କଅଣ ହବ ?

ମାଳତୀ—କଅଣ ? ତମମାନଙ୍କ ଭଳି ଚତୁରା ସହଚରୀଗଣ ଥାଉ ଥାଉଁ ଜେମାମଣି ଯେବେ ମାନିନୀ ହେଲେ, ତେବେ ତମର ସଖୀପଣ କଅଣ ରହିଲା ? ଛାର ମାନ ଲାଗି ଫୁଲରୁ ଶରଧା ତୁଟେଇବା କଣ ଉଚିତ ?
( ଏହା କହି ଧୀରେ ଧୀରେ ରାଧାଙ୍କ ପାଖକୁ ଯାଇ )
ଜେମାମଣି ! ଏ ବସନ୍ତ କାଳରେ ବିରହିଣୀମାନଙ୍କ ବଚ୍ଛେଦ ଦଶା ପଡିବ ବୋଲି ଆଗରୁ ସାବଧାନ ହୋଇ ଆମୋଦ ପ୍ରମୋଦରେ ଦିନ ହରୁ ଥାଆନ୍ତି । ତମର ଯେ ମୁଁ ଓଲଟା ଦେଖୁଚି । ରାଧେ ! ଏ କୁନ୍ଦଫୁଲ ହାରଟି ଗଳାରେ ପିନ୍ଧ ।

ଶ୍ରୀରାଧା—ମାଳିନି ଲୋ ! ମୁଁ ମହା ଅପରାଧିନୀ । ଯା, ଯା, ସେହି ଚନ୍ଦ୍ରାବଳୀକି ଡ଼ାକି ଫୁଲହାର ଦେ ଯା ।

## ଗୀତ

ସଙ୍ଗିନି ! କୃଷ୍ଣ ଅପରାଧିନୀ ମୁଁ । ଘୋଷା ।
ଚନ୍ଦ୍ରାବଳୀକ, ନିଅ ଯା ତୁ ଡାକ,
ସେ ବିନା ହୃଦୟ ବଳାସିନୀ (ମୁଁ) । ୧ ।
ମଥା ମୋର ବ୍ୟଥା, କହୁ ନୁହେ କଥା,
ତୋ କୁନ୍ଦମାଳ ତୁ ନିଅ ଘେନି (ମୁଁ) । ୨ ।

ମାଳତୀ—ଧନି ! ଫୁଲର ମୂଲ ମାଗୁନାହିଁ ମ ? ନାହିଁ କରୁଛ କାହିଁକି ? କେତେ ଶରଧାରେ ପରା ତମ ପାଖକୁ ଆଣିଛି, ନିଅ ମ, ନିଅ !

( ମାଳା ପ୍ରଦାନ )

ଶ୍ରୀରାଧା—( ମାଳା ହାତରେ ଧରିବା ବେଳେ ପନ୍ନ ଖଣ୍ଡିକ ଖସି ପଡ଼ିଲା ) ପନ୍ନ

ମହାମହିମ ମହିମାର୍ଣ୍ଣବ ଶ୍ରୀମତୀ ରାଧିକା ସୁନ୍ଦରୀ !
ଯୁଗେ ଯୁଗେ ରହିଥିବ, ଏହି ପଦ ସେବୁଥିବ,
ଦାସୀ ହୋଇ ରହିବ ତୁମ୍ଭର ।
ଲିଖିତଂ ଶ୍ରୀ ବଙ୍କାନନ୍ଦନ, ସାକିନ ବୃନ୍ଦାବନ,
ଚିଠା ଶ୍ରୀ ନନ୍ଦରାଜନ, ପେଷା ନାରୀ ମନଚୋରି ।

ଶ୍ରୀରାଧା—( ପନ୍ନ ଗୋଟାଇ ପଢ଼ିବା ସମୟେ କମେ କ୍ରୋଧମନା )

ମାଳତୀ—( ଅଡ଼ ନୟନରେ ମୃଦୁ ମୃଦୁ ହସି ପଛଘୁଞ୍ଚା ଦେଲେ )

ଶ୍ରୀରାଧା—( କ୍ରୋଧରେ ମାଳତୀଙ୍କ ଗୃହକୁ ) କହିଲେ ମାଳିନି ! ଏ ଚଟି କା'ଠାରୁ ଆଣିଚୁ ? ଦୂର ହୁଅ।

ଲଳିତା—ରାଧେ ! ଏ ମାଳତୀଟିର କିଛି ଦୋଷ ନାହିଁ ମା ! ଜଣାଯାଏ ଏ ନବରଙ୍ଗଯୁକ୍ତ ସେହି ନବରଙ୍ଗିଆ କହ୍ନେଇଙ୍କର।

ମାଳତୀ—( ଅଡ଼ ନୟନେ ଶ୍ରୀରାଧାଙ୍କୁ ଗୃହକୁ ପ୍ରସ୍ଥାନ )

ଶ୍ରୀରାଧା—( ମାଳତୀ ଯିବା ବାଟକୁ କୋପ ଦୃଷ୍ଟିରେ ଚାହିଁଥିବା )

ବିଶାଖା—ମାନିନି ! ଆମେମାନେ ହାତ ଧରି କହୁଛୁଁ, ଏ ବୃଥା ମାନ ତ୍ୟାଗକର।

ସଖୀଗଣ—( ସମସ୍ୱରେ )

## ଗୀତ

ମାନିନୀ ରତନ ଧନି !　　　　　ମାନ ତେଜ ଏଣିକି ।
ଆନନ୍ଦଦାୟି ! ଆନନ୍ଦେ ଭଜ ବେଣୁପାଣିଙ୍କ । ଘୋଷା ।
କହୁଛୁଁ ଦୟିତା ରାଧେ !　　　　　ଧରୁଛୁଁ ତୋ ପାଣିକି ।
ସେ ଶ୍ୟାମନାଗର ଦୋଷ ଫିଙ୍ଗିଦିଅ ପାଣିକି । ୧ ।
ଯା ଦୁର୍ବାଦ ନ ଛାଡ଼ିବ　　　　　ବୋଲି ବୁଝି ମଣିକି ।
ଗୃହକୁ ପରା ହରିତାଳିକାର ଜଣାମଣିକି । ୨ ।
ଯାର ଲାଗି ମୂରୁଛିଲ　　　　　କୁଳ ଶୀଳ ଆଣିକି ।
ଜାଣୁ ଜାଣୁ ମଣି ତାଙ୍କୁ ପର ପର ମଣି କି । ୩ ।
ପୀରତି-ବଉଳା ! ବୃଥା　　　　　କୀରତି ଜଣାମଣିକି ।
ଦୁଃଖ ଦେଇ ସୁଖୀ କର ଦୁଃଖୀ ଚିନ୍ତାମଣିକି । ୪ ।

ବିଶାଖା—ମାନିନି ! ପଦ୍ମଠାରେ ଭ୍ରମର ପଦ୍ମେ ଫଣ୍ଟାରେ ଦୋଷ
କରିଥିଲେ ହେଲେ, ସେ କଣ ତାହା ଘେନି ବସିଥାଏ ?
ଅବଶ୍ୟ ତ ପଦ୍ମ ଭ୍ରମର ପ୍ରୀତି ହୁଏ ।

ଚିତ୍ରା—ଧନି ! ଆମମାନଙ୍କ କଥା ଘେନୁ ନାହଁ ଯେ, ଏହା ତାହାଙ୍କୁ
ଉଚିତ ହେବ ? କହୁଛ ରାଧେ !

### ଗୀତ

କହ, ତାହାଙ୍କୁ ଉଚିତ ହେବ ଏହା ? ସୁଦେହା ଗୋ ! । ପଦ ।
ନ କଲେ ତୁ ତାଙ୍କୁ ମୋର, ଶ୍ୟାମ ହୋଇବେ କାହାର ?
ଧନି ! ନ ଘେନୁ ଅମ୍ଭ କୁହା, ସୁଦେହା ଗୋ ! । ୧ ।
ଯେ ଯାହାର ସେ ତାହାର, ନୋହିବ କି ସମାଚାର ?
ଧନି ! କାଳିକି ଥିବୁ କି ଅସ୍ନେହା ?, ସୁଦେହା ଗୋ ! । ୨ ।
ଦା ହୁଅନ୍ତି ନୀଳ ହାତୀ, ସହିବ କାହାର ଛାତି;
ଧନି ! ଦେଖି ସେ ନେତ୍ରୁ ନୀର ବୁହା, ସୁଦେହା ଗୋ ! । ୩ ।
ଅଗୋ ତନୁ କୋମଳା, ମୋହନ ପ୍ରେମଶୀଳା,
ଧନି ! କି ବୋଲି ସ୍ଥିତ କଲୁ ଲୁହା ?, ସୁଦେହା ଗୋ ! । ୪ ।

( ଗୀତ ଗାଇ ଗାଇ ବନଦେବୀ ବୃନ୍ଦା ପ୍ରବେଶ )



### ଗୀତ

ସବାଗ ତ ମୁଖେ ନାହିଁ ଗୋ ରାଧିକେ !
ସବାଗ ତ ମୁଖେ ନାହିଁ ।
ପରାଗ ମୁଣ୍ଡିଲ— ପଙ୍କଜ ପରାପ୍ରେ,
ଦଗ୍ଧଅଛୁ କାହିଁପାଇଁ ? ଗୋ ରାଧିକେ ! । ପଦ ।

ନାହିଁ ଘନଶ୍ୟାମ—                 ଶୋଭୁକୁ ତୁ କିମ୍ପା ?
ଚିହ୍ନୁ ନାହୁଁ ମାଳ ଚେଳ ।
ଗୃହ ମୃଗମଦ,                ତିଳକ ଲବଣ୍ୟ—
କାହିଁକେ ନ କରୁ ମେଳ, ଗୋ ରାଧିକେ ! । ୧ ।
ଶ୍ରୀଙ୍କରେ ବେଢ଼ିବା,                ତମାଳ ତରୁକୁ.
କି ବୋଲି ଦେଲୁ ଉପାଡ଼ି ।
ବରଜ ନାଗର,                ନିକୁଞ୍ଜ ବିହାର,
ଅରକ୍ଷିଲୁ ଚନ୍ଦ୍ରନାଡ଼ୀ, ଗୋ ରାଧିକେ ! । ୨ ।

ଶ୍ରୀରାଧା— ବୃନ୍ଦେ ! ପୋଡ଼ା ଘାଅରେ ଅଉ ଚୂନ ବୋଳ ନାହିଁ ଅସ ।

( ନାପିତୁଣୀ ବେଶେ ଶ୍ରୀକୃଷ୍ଣଙ୍କ ପ୍ରବେଶ )

## ଗୀତ

ବ୍ରଜ ବନିତା ଗୋ !          ଅସ ଦେବ ପିନ୍ଧିବ ଅଳତା ।
ମୋ ଅଳତା, ମୋ ଅଳତା । ଘୋଷା ।
ବୃଷଭାନୁ ବ୍ରଜଜେମା ନବଙ୍କଶୋଭା,
ଶୁଣିଚି ସୁବେଶ ହେଉ ନାହାନ୍ତି ବୋଲି
କାହିଁକି ଗୋ ଶ୍ରୀମତୀ,                ବୃଥା ଗୁମାନବତୀ,
ଚନ୍ଦ୍ରବଦନ ପୋତି,                ଦୁଃଖେ ବସିଅଛନ୍ତି,
ଏତେ ସଙ୍ଗିନୀ ଥାଇ,          କି କରୁଛ ଗୋ କାହିଁ ?,
ନ ଦେଲ ମୋତେ ଯା ଏ ବାରତା । ୧ ।

ଲଳିତା—ନାପିତୁଣି ଲୋ ! ଆମେମାନେ ବୁଝେଇ ବୁଝେଇ ରହିଲୁଣି, କହୁ କହୁ ପର ରାଧା ଅମର ରାଗି ଯାଉଛନ୍ତି ଅଜ ମାନ ଭଙ୍ଗାଇବୁ କପର ?

ନାପିତୁଣୀ—( ରାଧାଙ୍କ ନିକଟକୁ ଯାଇ ) ଜେମାଦେଈ ! ଏଇ ଅବଗୁଣ କଅଣ ସବୁଦିନେ ଧେନି ବସିଥିବ ? ଧନି ! ତମକୁ ମୋ ରାଣ, ଅସ ଅଲତା ପିନ୍ଧେଇ ଦିଏଁ ।

ଶ୍ରୀରାଧା—ନାପିତୁଣି ଲୋ ! ଏ ହତଭାଗିନୀ ରାଧାର ଅଜ କେଉଁ ସୁଖ ଅଛି ବୋଲି ଅଲତା ପିନ୍ଧେଇବାକୁ ଅହୁଚୁ ?

ନାପିତୁଣୀ—ଜେମାଦେଈ ! ଏ ଅଭିମାନ କଅଣ ସବୁଦିନେ ରହିବ ? ସବୁ ମାନ ଅଭିମାନ ପଛକୁ ପକେଇଦେଇ ମୋ ପ୍ରାର୍ଥନା ରକ୍ଷାକର ।

ଶ୍ରୀରାଧା—ନାପିତୁଣି ଲୋ ! ଏତେ ତ ବଳେଇ କହିଲୁଣି, ତୋ କଥା କାହିଁକି ଭାଙ୍ଗିବି ? ଗ୍ଲୁଲ୍ ।

( ଏହା କହି ଅଲତା ପିନ୍ଧିବାକୁ ଅଗ୍ରସର ହେଲେ )

ସଖୀଗଣ—( ରତ୍ନ ପୀଢ଼ ସଜାଡ଼ି ରଖିବା ଅଭିନୟ )

ଶ୍ରୀରାଧା—( ପୀଠରେ ବସି କହନ୍ତି ) ଦେ, ଅଲତା ଦେ ।

ନାପିତୁଣୀ—( ପାଦ ଧରି ବଙ୍କିମୀ ଚେପଡ଼ି ଫିଟାଇ ନଖ ରଞ୍ଜିବା ତୁଳୀ ଧରି ଦକ୍ଷିଣ ପାଦରେ ଅଲତା ଦେଇ ବାମ ପାଦରେ ଦେଉଁ ଦେଉଁ,'ଶ୍ୟାମ ଶ୍ୟାମ' ବୋଲି ପାଦ ଧାରରେ ଲେଖି କହିଲେ ) ଧନି ! ମୋ ଅଲତା ଦେବାଟି ସୁନ୍ଦର ହେଲା କି ନାହିଁ, ଦେଖ ।

ଶ୍ରୀରାଧା—( ନିଜ ପାଦକୁ ଚାହିଁ କ୍ରୋଧରେ କହୁଲେ ) ହଲୋ ପାପୀୟସି ! ତୁ ମୋ ପାଦରେ କଅଣ ଲେଖିଲୁ ?

ନାପିତୁଣୀ—ରାଧେ ! ଶ୍ୟାମ ନାମ ଛଡ଼ା ଆଉ କିଛୁ ଲେଖିନାହିଁ ମ, ଇମିତି ରାଗୁଚ କାହିଁକି ?

ଶ୍ରୀରାଧା—( କ୍ରୋଧରେ ) ଯା, ଯା—ତୋର ତ ଯୌବନ-ମଦ ଛାଡ଼ି ନାହିଁ, ତୁ ଅଳତା ଦେବୁ କଅଣ ? ଯା, ଦୂରହୁଅ ।

( ଅଳତା ପୋଛିପକେଇ ସକ୍ରୋଧେ କହୁଲେ )

ଗୀତ

ଯା ଯା ନାପିତୁଣୀ !,　　　　ଏଡ଼େ ଗରବିଣୀ,
ଯା ଯା ଲୋ ନିର୍ଲ୍ଲଜ୍ଜ୍ୟା ତୁହି ।
ଛଳେ ଛଳେ ଆସି,　　　　ମୋ ପୁରେ ପ୍ରବେଶି,
ଅଙ୍ଗ ଲକ୍ଷା ଦେଲୁ ତୁହ ।
( ଏବେ ) ମୋ ପାଶୁ ଯାଅ ଯା ।
ତୋର ମୁଖେ ନାହିଁ ଲଜ୍ଜା । ୧ ।
କାହାର ନାମ ତୁ,　　　　ମୋ ପାଦେ ଲେଖିଲୁ,
ଏ ବଳ କେ ଦେଲା ତୋତେ ( ଲୋ ) ?
(ଏ) ରାଧାର ପ୍ରତିଜ୍ଞା　　　　ଜାଣି ନାହୁଁ କି ଲୋ,
ଛଇ ଦେଖାଉଚୁ ମୋତେ ?
ଭଲ ଚାହୁଁଥିଲେ,
ଯା ଯା ମୋ ପାଶରୁ ଭଲେ । ୨ ।
( ହାତ ଧରି ବାହାର କରି ଦେବା )

ସଖିଗଣ—( ଭାଙ୍ଗକାରେ ରହୁଦିବା ଅଭିନୟ )

ଲଳିତା—ମାଜନ ! ନାପିତୁଣୀ ତ ତା ପ୍ରତିଫଳ ପାଇଲା, ତେବେ ଆମମାନଙ୍କ କଥା ନ ମାନି କାହିଁକି ଏପରି ଦଶା ହେଉଛ ? କହିଲ ଭଲା ! ରାଧେ ! ତମେ ଏଇନାଗେ କହିଲେ—ରାଗିବ, ସେଇଥିପାଇଁ ଆମେମାନେ କିଛି କହୁନାହୁଁ ସିନା ?

## ଗୀତ

କହିଲେ ବହୁରୁ ରୋଷ ରେ ସହି !
ତୁହି ଦେଖିବାକୁ ଅଛୁ କି ଅଛୁବ,
ନିକୁଞ୍ଜବିହାରୀ ଦୋଷ, ରେ ସହି ! । ଘୋଷା ।

ବ୍ରଜ ପୁରନ୍ଦର—　　　　　　　　ନନ୍ଦନ ସୁନ୍ଦର—
ବୃନ୍ଦ ଚନ୍ଦ୍ରବରତିଙ୍କି ।
କର କୋଡ଼ରେ,　　　　　　　　ଲୁଗୁଇଲୁ ଉତର—
ଅତେ ନ ଚାଳି ଦୃଷ୍ଟିକି, ରେ ସହି ! । ୧ ।
ଥରକୁ ଥର ପତ୍ରାବଳୀ ପକଇ,
ଲେଖି ଦନ ଅଛି ନାହିଁ ।
ଅଦ୍ୟ ଯେତେ ସେବା　　　　　　　　ଅଳୀ ଅଜଣାରେ,
ତୋତେ ଏକା ସାକ୍ଷୀ ତୁହି, ରେ ସହି ! । ୨ ।
କି କରୁ ନାହାନ୍ତି,　　　　　　　　ତୋର ନକଇ,
ଗ୍ରଳ ପଦ ପାଶେ ଥାଇ ।

ତୁ ସିନା କଷେଧ—!  କାଲ୍ଲ ସେ ଅସିଲେ,
ଯାବକ ଲେଖିବା ପାଇଁ, ରେ ସହି ।। ୩ ।
ଏବେ ତୋ ଘରୁଁ  ଅନ୍ତର ହୋଇ ସେ,
ତୋ ପଦ ଚିହ୍ନର ଧୂଳୀ ।
ବୋଲି ହେଉଛନ୍ତି,  ଲୁହ ପୋଛୁ ପୋଛୁ,
ବୃନ୍ଦାବନଯାକ ବୁଲି, ରେ ସହି ।। ୪ ।

ନେପଥ୍ୟେ—( ଗାୟକୀ ବେଶେ ଶ୍ରୀକୃଷ୍ଣଙ୍କ ବୀଣାଧ୍ୱନି )

ସମସ୍ତେ—( ସେହି ଦିଗକୁ କର୍ଣ୍ଣ ଡେରି ଶୁଣିବା ଅଭିନୟ )

ଶ୍ରୀରାଧା—( ମନେ ମନେ ପ୍ରଶଂସା କରି କହିଲେ )
ଅହା ! କି ସୁନ୍ଦର ସୁମଧୁର ସ୍ୱନ !

ଲଳିତା—ରାଧେ ! ଶୁଣିବାକୁ ଶରଧା ହେଉଚି କି ?

ଶ୍ରୀରାଧା—ହଁ ସଖି, ଏ ମଧୁର ବୀଣାତାନ ଟିକିଏ ଶୁଣିବି । ଅହା ! କିଏ ସେ ଏପରି ବଜାଉଚି ?

( ବୃନ୍ଦାଙ୍କର ପ୍ରବେଶ )

ବୃନ୍ଦା—ଧନି ! ଗୋଟିଏ ଅପୂର୍ବସୁନ୍ଦରୀ ଗାୟକୀ ବୀଣା ବଜେଇ ଗୀତ ଗାଇ ଗାଇ ଆସୁଚି । ସେ ବିଦେଶୀନୀଟି ନାନାପ୍ରକାର ରାଗ ରାଗିଣୀ ଆଳାପ ଜାଣେ । ତମର ପାଖକୁ ଗୀତ ଭେଟିବାକୁ ଅସିବ ବୋଲି ମୋତେ ବାଟରେ କହୁଥିଲା ।

ଶ୍ରୀରାଧା—ସେ କେଉଁଠାରୁ ଅସିଚି, ସଖି ?

ବୃନ୍ଦା—ମଥୁରାରୁ ।

ଶ୍ରୀରାଧା—ତେବେ ତାଙ୍କୁ ଡାକ ।

ଲଳିତା—ଅଗୋ ! ଡାକିବ କଅଣ ସ ? ଏଇ ଦେଖ, ସେ ଗାୟକୀଟି ଅସି ପହୁଞ୍ଚିଲାଣି । ଅହା, କି ସୁନ୍ଦର ମାଇପିଟିଏ ଗୋ !

( ହସି ହସି ଗାୟକୀବେଶି ଶ୍ରୀକୃଷ୍ଣଙ୍କ ପ୍ରବେଶ )

ଶ୍ରୀରାଧା—ଗାୟକି ଲୋ ! କେମିତ ଗୀତ ଗାଉଚ୍, ଗୋଟିଏ ଗାଇଲୁ ଦେଖି ।

ଗାୟକୀ—ପ୍ରେମମୟୀଙ୍କର ଯେ ଆଜ୍ଞା ।

( ଏହା କହି ବୀଣା ଅଲାପ କଲେ )

ଗୀତ

ବାଜ ରେ ବାଜ ରେ ବୀଣା ! ବାଜ ମଧୁରେ ।
'ବ୍ରଜ ମୋହନୀ କିଶୋରୀମଣି
ଶ୍ରୀରାଧେ' ବୋଲି ଥରେ । ୧ ।

ନିକୁଞ୍ଜ-ଅଭିସାରଣୀ                    ରସ-ରଙ୍ଗିଣୀ ସଙ୍ଗିନୀ,
ସୁଧା ଭାଷିଣୀ ।
ଶରଦ-ଚନ୍ଦ୍ରବଦନୀ,                    କୁଞ୍ଜରବର ଗମିନୀ,
ତପତ କାଞ୍ଚନ-ବରନୀ ।
ଜୟ ବୃନ୍ଦାବନେଶ୍ୱରୀ,                    ବୃଷଭାନୁ କୁମାରୀ,
ପ୍ରେମମୟୀ ବିନୋଦନୀ !
ଜୟ ଗାନ୍ଧର୍ବିକେ,                    ଜୟ ଶ୍ରୀ ରାଧିକେ,
ରସନିଧି ଯାଦବବାସିନୀ ।

ଯଶକୀର୍ତ୍ତି ଦାୟିନୀ,
ପ୍ରୀତି ଅହ୍ଲାଦନୀ, ଶ୍ରୀମତୀ ଧନୀ !
( ଜୟ ଯଶ କୀର୍ତ୍ତି ଦାୟିନୀ )
ସଙ୍ଗୀତ ସାହିତ୍ୟ ଅନୁରାଗିଣୀ, ( ଜୟ )
କୃଷ୍ଣ ପ୍ରାଣାଧିକେ ସତୀ ପଦ୍ମିନୀ, ( ଜୟ )
ଶ୍ୟାମ ପ୍ରେମ ତରଙ୍ଗିଣୀ, ( ଜୟ )
ଜୟ ଜୟ କୃଷ୍ଣ ମନମୋହିନୀ, ( ଜୟ )
ନୃତ୍ୟ ବିଳାସିନୀ କୃଷ୍ଣ ଭାବିନୀ, ( ଜୟ )

ଶ୍ରୀରାଧା—( ଗୀତରୁ କୃଷ୍ଣ ନାମ ଶୁଣି କ୍ରୋଧରେ ଅଧର କମ୍ପାଇ ଲଳିତାଙ୍କୁ କହିଲେ ) ଲଳିତେ ! ଗାୟିଣୀକି କହ, ସେ ତା ଗାନ ବନ୍ଦକରି ଏଠାରୁ ଚଞ୍ଚଳ ଚାଲି ଯାଉ ! ନଇଲେ ତା ପ୍ରତିଫଳ ପାଇବ, ସେ ନିର୍ଲ୍ଲଜୀକି ଶୀଘ୍ର ବାହାର କରିଦିଅ ।

ଲଳିତା—ଗାୟିନି ଲୋ ! ଆଉ ଆଉ, ତୋ ଗୀତ ବନ୍ଦକରି ଏଠୁଁ ବେଗି ଚାଲିଯା, କାହିଁକି କୃଷ୍ଣ ନାମ ଶୁଣେଇଲୁ ?

ଗାୟିକା—କେମାପଣିଙ୍କର ମୁଁ କି ଦୋଷ କଲି କି ?
କୃଷ୍ଣ ନାମରେ ପରା ତାଙ୍କର ବହୁ ଶରଧା,
ଆଜି ଏ କି ବିପରୀତ ଶୁଣିଲି ?
ହାୟ ! ହାୟ ! ! ଏପରି କଟୁକଥା କହି ତଡ଼ି ଦେଉଛନ୍ତି କାହିଁ ?

ମୋତେ କିଛି ପୁରସ୍କାର ନ ଦେଲ୍ ପଛକେ,
ମୁଁ ଆଉ ଗୋଟିଏ ଗୀତ ଗାଏଁ ?

ଲଳିତା—ନା, ନା, ତୁ ଚଞ୍ଚଳ ଏଠାରୁ ବାହାର ଯା; ଆମ ମାନମୟୀ ରାଧାରାଣୀଙ୍କ ଆଜ୍ଞା ଅନ୍ୟଥା ହେବନାହିଁ ।

ଗାୟିକା—ସଖି ! ଏଇ ଗୋଟିକ ଗୀତ ଗାଇସାରେ, ତାହାହେଲେ ଯିବ ।

( ଏହା କହି ବୀଣା ତାର ଝଙ୍କାରିବା ଅଭିନୟ )

ଶ୍ରୀରାଧା—( ରୋଷ ହୋଇ ଉଠିଅସି କହିଲେ )
କି ଲୋ ଗରବିଣି ! ତୁ କାହା ଆଦେଶରେ ପୁଣି ଗୀତ ଗାଇବାକୁ ଆରମ୍ଭ କରୁଛ ? ଯା, ଯା, ଚଞ୍ଚଳ ତୋ ବାଟ ଦେଖ୍ ।

( ଗାୟିକାଙ୍କୁ ବାହାର କରିଦେଲେ )

ଲଳିତା—କିଛି ନ ବୁଝି ନ କରି ଗାୟିକା ଆମ କୋପମୟୀ ମାନିନୀଙ୍କ ଆଗେ କୃଷ୍ଣ ନାମରେ ଗୀତ ଗାଇଲା ଯେମିତି, ତା'ର ପ୍ରତିଫଳ ପାଇଲା ସେମିତି ।

ଶ୍ରୀରାଧା—( ସଖୀମାନଙ୍କୁ ଚାହିଁ ) ସଖିଏ ଗୋ ! ତୁମେମାନେ ଏଣିକି ଏପରି ଲୋକମାନଙ୍କୁ ହଠାତ୍ ମୋ ପାଖକୁ ଆଣିବ ନାହିଁ; ଆଜଠାରୁ ସାବଧାନ ଥାଅ ।

## ଗୀତ

ଅଗୋ ସଖୀଗଣ !,                    ଥାଅ ସାବଧାନ,
କହୁଛି ତୁମ୍ଭ ଅଗରେ ।
ମୋର ବିନା ଅଦେଶରେ ।
ଦେଖା ନ କରାଅ କାହେ ।। ୧ ।।

ଅଚିହ୍ନା ଲୋକଙ୍କୁ                    ମୋର ନୀଳକଣ୍ଠଙ୍କୁ,
ଅଣିବ ନାହିଁଟି ବାରେ ।
ସର୍ବ ସଖୀ ଶୁଣିଥାଅ ।
ମୋର ଏ ଦୃଢ଼ବ୍ରତ ନିଷ୍ଠୁର ।। ୨ ।।

ଦେଖ ବିଦେଶିନୀ,                    ଜାତ ଭିକାରୁଣୀ,
ଗୀତ ଛଳେ କି ନ କଲା !
କୃଷ୍ଣ ନାମ ଶୁଣାଇଲା ।
(ମୋ) ହୃଦୟକୁ ଜାଳିଦେଲା ।। ୩ ।।

ଯା ଲାଗି ଏ ଦଶା,                    ଏତେ ଲୋକହସା,
ତାର ପ୍ରଶଂସା ଗାଇଲା ।
ଆଜି ଅଭି ଧନେ କେହୁ ।
ଏ କାର୍ଯ୍ୟ କରିବ ନାହିଁ ।। ୪ ।।

( ଏହାପରେ କ୍ରୋଧିନୀ ଦୈନ୍ୟରେ ବସିବା )

**ପରଦା ପତନ**



( ମାନଭଞ୍ଜନ ଅରମ୍ଭ )



## ପଞ୍ଚମ ଅଙ୍କ

### ପ୍ରଥମ ଦୃଶ୍ୟ

ଯାବଟ ପଥ

( ଶ୍ରୀକୃଷ୍ଣ ଯୋଗୀବେଶେ ଗୀତ ଗାଇ ଗାଇ ପ୍ରବେଶ )

**ଗୀତ**

ବନ୍ଧୁରେ ! ଅଜ ତୋ ଲଗି, ଭସ୍ମ-କନ୍ଥା ଅନୁରାଗୀ
ମାନ-ଧନ ଭିକ୍ଷା ମାଗି ଅଣିବ ସତେ ।
ତୋର ଶ୍ରୀମୁଖ ପ୍ରସନ୍ନ, ସତେ କରିବ ଦର୍ଶନ,
ଛଣା ସୁଧା ବଚନ କି ଭାଷିବୁ ମୋତେ ।
ତୋର ନାମ ମାଳା ଅଶ୍ରିତ ।
ମାନମୟି ଗୋ ! ମୁଁ ତୋର କିଣିଲା ଭୃତ୍ୟ । ୧ ।

( ବଂ ହର ହର ହର ହର କହୁ ଡମ୍ବରୁ ବାଦନ କଲେ )
( ଗୋପୀଗଣ ପ୍ରବେଶ )

ପ୍ରଥମା ଗୋପୀ — ସଖି ! ଦେଖିଲଣି ଗୋ ! କି ସୁନ୍ଦର କିଶୋର-ବପୁସିଅ ଯୋଗୀଟିଏ ଅସୁଚନ୍ତି ।

ଦ୍ୱିତୀୟା ଗୋପୀ—ସଖି ! ପଚ୍ଛରବଟି, ତାଙ୍କ ମଠ କେଉଁଠି ?

ତୃତୀୟା ଗୋପୀ—ହଇ ହେ ଯୋଗୀବର ! ତମ ଅସ୍ଥାନ କେଉଁଠାରେ ?

ଧ୍ୱମସ୍ତେ—( ସମସ୍ୱରେ )

## ଗୀତ

ଗୋପୀଗଣ—କହ ଯୋଗୀବର !,          କି ନାମ ତୁମ୍ଭର ?
କାହିଁ ନିଜ ବାସସ୍ଥାନ ?

ଯୋଗୀ—    କହୁଅଛୁ ଶୁଣ,          ଅନନ୍ତ ମୋ ନାମ,
ବାସ ନିତ୍ୟ ବୃନ୍ଦାବନ । ୧ ।

ଗୋପୀଗଣ—ଏ ବୟସେ ଯୋଗୀ,          ଭସ୍ମ କନ୍ଥା ଭୋଗୀ
ହେବା ନ ଥିଲା ତୁମ୍ଭର ।

ଯୋଗୀ—    ବାଳକାଳୁଁ ସାଧି          ଥିଲେ ହୁଏ ସିଦ୍ଧି
ଏ ସର୍ବ ଶାସ୍ତ୍ର ବଚନ । ୨ ।

ଗୋପୀଗଣ—ଗୃହବର୍ଣ୍ଣାଶ୍ରମ,          ବେଦର ନିୟମ,
ନାହିଁ କି ଶ୍ରବଣେ ଶୁଣି ?,

ଯୋଗୀ—    ଧ୍ରୁବ କେଉଁପର,          ବାଳକାଳୁଁ ହର,
ଭଜି ହେଲେ ମହାଜ୍ଞାନୀ । ୩ ।

ଗୋପୀଗଣ—ଅଇଲ କପର,          ପିତା ଗର୍ଭଧାରୀ,
ଦୁହିଁଙ୍କର ଋଣୀ ହୋଇ ?

ଯୋଗୀ— ଏ ମିଥ୍ୟା ସଂସାର, କେ ନୁହେ କାହାର,
ହରିନାମେ ସବୁ ଥାଇ । ୪ ।

ଗୋପୀଗଣ—କେତେ ତୀର୍ଥଧାମ, କରିଛ ଭ୍ରମଣ ?
କହ ହେ କିଶୋରଯୋଗୀ !

ଯୋଗୀ— "ବୃନ୍ଦାବନଂ ପରିତ୍ୟଜ୍ୟ ପାଦମେକଂ
ନଗଚ୍ଛସି" ଗୋ ଶୁଭାଙ୍ଗି । ୫ ।

ଗୋପୀଗଣ— ଦଣ୍ଡେ ଠିଆ ହୁଅ, ହେ ଭକତପ୍ରିୟ !
ଆଣି ଦେଉଅଛୁ ଭିକ୍ଷା ।

ଯୋଗୀ— ପତିବ୍ରତା ଛଡ଼ା, ଅନ୍ୟ ହସ୍ତୁ ଭିକ୍ଷା,
ନ ଛୁଇଁବ ମୋର ଦୀକ୍ଷା । ୬ ।

ଗୋପୀଗଣ— ତେବେ ଆମ୍ଭେ ମାନେ, ଏ ବୃନ୍ଦାବନେ,
କୋହୁଁ କି ପତିବ୍ରତା ?

ଯୋଗୀ— ତାହା ତୁମ୍ଭେ ଜାଣି— ଥିବ ଗୋ ତରୁଣି,
ନ କହ ଗୃହସ୍ଥ କଥା । ୭ ।

ଗୋପୀଗଣ— ପତିବ୍ରତା ବୋଲି କାହାକୁ ଜାଣିଛ ?
କହ ହେ ନୂଆ ଭିଖାରୀ !

ଯୋଗୀ— ଏ ବ୍ରଜରେ ଧନୀ, ସତୀ ଶିରୋମଣି,
ରାଧା ନାମଟି ତାହାର । ୮ ।

ଗୋପୀଗଣ— ରାଧା ସତୀ ବୋଲି, କପରି ଜାଣିଲ ?
ସେ ତ କୁଳକଳଙ୍କିନୀ ।

ଯୋଗୀ— ମୋତେ ଶ୍ରୀଗୁରୁଙ୍କ ଆଦେଶ ପ୍ରତ୍ୟଷ,
ରାଧା ପତିବ୍ରତା ଧନ୍ୟା । ୯ ।

୧ମା ଗୋପୀ—ଯୋଗୀବର ! ତେବେ ଆମମାନଙ୍କ ଠାରୁ ଭିକ୍ଷା ଗ୍ରହଣ କରିବ ନାହିଁ କି ?

ଯୋଗୀ—ନା, ନା; ପତିବ୍ରତା ରାଧା ଛଡ଼ା ଅନ୍ୟ କାହାରି ହସ୍ତରୁ ଭିକ୍ଷା ଗ୍ରହଣ କରିବି ନାହିଁ । ମୋତେ ଗୁରୁଦେବଙ୍କ ଆଦେଶ ଅଛି, ସେହି ରାଧା ହସ୍ତରୁ ଭିକ୍ଷା ନେଲେ ମୋର ଯୋଗ ସିଦ୍ଧ ହେବ । ତୁମ୍ଭମାନଙ୍କ ମଧ୍ୟରେ ରାଧା କିଏ ? କହ । ମୁଁ ତାହାର ହସ୍ତରୁ ଭିକ୍ଷା ନେବି ।

୨ୟା ଗୋପୀ—ତେବେ ଏହି ବାଣ୍ଟେ ବାଣ୍ଟେ ଯାଅ, ଅଭିମନ୍ୟୁଘର କିଏ ବୋଲି ପଚାରିଲେ ଲୋକେ କହିଦେବେ । ସେହି ଅଭିମନ୍ୟୁ ସେନାର ପତ୍ନୀ ନାମ ରାଧା, ତା ମାତାର ନାମ ଜଟିଳା । ଯାଅ, ଏହି ରାଜପଥ ଦେଇ ଯାଅ ।

୩ୟା ଗୋପୀ—ଅଗୋ ! ରାଧାକୁ କଳଙ୍କିନୀ କଳଙ୍କିନୀ କଅଣ କହୁ-ଆଅଛନ୍ତି ମ ? ଦେଖ, ଯୋଗୀ କିପରି କହୁଛନ୍ତି ।

୨ୟା ଗୋପୀ—ମଲ୍ଲ ମ, ଏ ଗାଁଅରେ ଅସତ୍ଙ୍ଗୀମାନେ ସିନା ତା କହନ୍ତି । ଯାହାର ଧରମ କରମକୁ ବଗୁର ଅଛି, ସେ କଣ ଏମିତି କହିବ ? ବଡ଼ ବଡ଼ ମହତଲୋକଙ୍କ ମୁଖରୁ ଯାହା ଶୁଣିମ ସେଇ ସିନା ସାର !

୧ମା ଗୋପୀ—କି ସୁନ୍ଦର ଯୋଗୀଟିଏ ସ !

୨ୟା ଗୋପୀ—ତାଙ୍କୁ ଦେଖି ଲେଉଟିବ ଯାଉଚ କି ଗୋ ! ଆସ, ଆସ ।

( ଗୋପୀମାନଙ୍କ ପ୍ରସ୍ଥାନ )

ଯୋଗୀ—( ବ୍ରଜଦାଣ୍ଡ ଅଭିମୁଖେ ପ୍ରସ୍ଥାନ )

ପଟ୍ଟ ପରିବର୍ତ୍ତନ



## ପଞ୍ଚମ ଅଙ୍କ

### ଦ୍ୱିତୀୟ ଦୃଶ୍ୟ

ଯାବଟ ଗ୍ରାମ

( ଯୋଗୀବେଶଧାରୀ ଶ୍ରୀକୃଷ୍ଣଙ୍କ ପ୍ରବେଶ )

ଯୋଗୀ—ହର ବଂ ବଂ ହର ବଂ ବଂ ଶଙ୍କର ଜୀ,

( ଏହା କହି ଡମ୍ବରୁ ବାଦନ କଲେ )

କୁଟିଳା—( ଖୁଁ ଖୁଁ କାଶି କରି ) ମଲି ରେ ! କେତେ ଯୋଗୀ ଭିକାରୀ ଆସୁଛନ୍ତି ସ । ଯାଏ, ଭିକ ମୁଠିଏ ଦେଇ-ଆସେଁ ।

( ବାମ ହସ୍ତେ ଯଷ୍ଟି, ଦକ୍ଷିଣ ହସ୍ତେ ଭିକ୍ଷାମୁଠି ଧରି, ଥରି ଥରି ପ୍ରବେଶ )

ଯୋଗୀ—( ମନହାସରେ ଦଣ୍ଡାୟମାନ ହୋଇ ସ୍ୱଗତଃ ) ମୁଁ ଏ ସାମାନ୍ୟ ଭିକ୍ଷାର ଭିଖାରୀ ନୁହେଁ, କେବଳ ପ୍ରେମମୟୀର ପ୍ରେମ ଭିକ୍ଷାହିଁ ମୋର ସମ୍ବଳ ।

ଜଟିଳା—( ଥରି ଥରି ନମସ୍କାର କରି କହିଲେ ) ଭିକ୍ଷା ନିଅ ।

ଯୋଗୀ—ତୁମ୍ଭେ କିଏ ? ତୁମ୍ଭ ନାମ କଅଣ କହ, ପରେ ଭିକ୍ଷା ନେବି ।

ଜଟିଳା—ମଲା ରେ ! ଭିଖାରି ତ ଭିକ୍ଷା ନବ, ଏତେ ହାକିମୀ କାହିଁକି ସେ ? ତେମେ କିଏ, ତମ ନା—କଅଣ ? ଏମିତ ପଗୁରିବା କି ଦରବାର ? ଏ ଯୋଗୀ ମୋ ନାଁ ଗାଁ ଅଛି କଅଣ ପାଇବ ? ମୋ ନାଁ ଜଟିଳା ବୁଢ଼ୀ ବୋଲି ଏ ଗୋପପୁରେ କିଏ ନ ଜାଣେ ?

ଯୋଗୀ—ମା ! ମୋ ଉପରେ ରାଗି ଯାଉଚ କି ? ମୋର ଯୋଗ ସିଦ୍ଧି ନିମନ୍ତେ ଗୁରୁଦେବଙ୍କ ଆଦେଶ ହୋଇଛି ।

ଜଟିଳା—ଏଁ (କାନପାରି) ଏଁ ଏଁ କଣ କହିଲ ?

ଯୋଗୀ—ମୋତେ ଗୁରୁଦେବଙ୍କ ଅଦେଶ ହୋଇଛି ।

ଜଟିଳା—( କାନ ଡେରି ) କଅଣ ଅଦେଶ ହୋଇଚି ?

ଯୋଗୀ—ଏ ବ୍ରଜମଣ୍ଡଳରେ ଯାବତ ଗ୍ରାମ ବାସିନୀ ଜଟିଳା ନାମୀ ବୃଦ୍ଧା ଗୋପୀକାର କୁଳବଧୂ ପତିବ୍ରତା ରାଧା ହସ୍ତରୁ ଭିକ୍ଷା ନେଲେ ମୋର ଯୋଗ ସିଦ୍ଧି ହେବ । ସେହି ରାଧା ହସ୍ତରେ ମୋତେ ଭିକ୍ଷା ଦାନ କରାଅ । ତୁମ୍ଭର ବହୁ ମଙ୍ଗଳ ହେବ ।

ଜଟିଳା— ଅହା ହା ! ମୋ ବୋହୂ ଅତି ସୁଲକ୍ଷଣୀ ହୋଇ ଥାଇ ।
ତା ନାଆଁରେ ଏ ଗୋପପୁରବାସୀ ହାଟରେ ବାଟରେ କେ
କେତେ କଥା ନଗେଇ ନଟେଇ କହନ୍ତି । ମୋ ବୋହୂ କଅଁ
କଳଙ୍କିଣୀ ହୁଅନ୍ତା ସ ? ମୋ ବୋହୂ ତ ପତିବ୍ରତା । ମୁଁ
ଭଗବତୀଙ୍କ କଥାକୁ ମିଛ ମଣୁଥାଏଁ, ଆଜି ପ୍ରତ୍ୟକ୍ଷରେ ଜାଣିଲି ।
ଅହା ! ଏ ଅସହଣୀମାନେ ଦେଖି ନ ପାରି ମୋ ବୋହୂକୁ
କେତେ ଅପବାଦ ଦଅନ୍ତି । ଧରମ କୁଆଡ଼େ ଯିବ ? ହଉ,
ଏବେ ଯାଏଁ, ବୋହୂ ହାତରେ ଭିକ୍ଷା ଦେଇପଠାଏଁ ।

( ଯାଇ ଯାଇ ନେପଥ୍ୟରେ ପ୍ରବେଶି )

'ବଶାଖେ ! ବଶାଖେ ! ! ଅଗୋ ବଶାଖେ ! ! !

ବଶାଖା—( ଅନ୍ୟଦିଗରୁ ) ଆଜ୍ଞା ! କଣ କହୁଚ ମା ?

ଜଟିଳା-- ଦାଣ୍ଡଦୁଆରେ ଜଣେ ଯୋଗୀ ଠିଆ ହୋଇଛନ୍ତି, ସେ
କହୁଛନ୍ତି, ରାଧା ହାତରେ ଭିକ୍ଷା ନେଲେ ତାଙ୍କର ଯୋଗ
ସିଦ୍ଧି ହବ ବୋଲି । ଚଞ୍ଚଳ ମୋ ବୋହୂ ହାତରେ ଭିକ୍ଷା
ଦିଅଅ ।

ବଶାଖା—( ନେପଥ୍ୟେ ) ଯେ ଆଜ୍ଞା !

ଯୋଗୀ—( ସ୍ୱଗତଃ ) ପ୍ରାଣେଶ୍ୱରୀ ! ଦର୍ଶନ ଦିଅ ।

( ଶ୍ରୀରାଧା ଭିକ୍ଷା ହସ୍ତେ ସଖିମାନଙ୍କ ସହ ପ୍ରବେଶ )

ଶ୍ରୀରାଧା—( ଭିକ୍ଷା ତଳେ ଥୋଇ ନମସ୍କାର କଲେ )

ସଖୀଗଣ—( ଭକ୍ତି ସହିତ ନମସ୍କାର କଲେ )

ଯୋଗୀ—ଆଶୀର୍ବାଦପୂର୍ବକ ହସ୍ତ ଟେକି କହିଲେ ) ତୁମ୍ଭମାନଙ୍କର ମନବାଞ୍ଛା ପୂର୍ଣ୍ଣହେଉ ।

ଲଳିତା—ଯୋଗୀବର ! ରାଧା ଆମର ଭିକ୍ଷା ଧରି ଠିଆ ହୋଇଛନ୍ତି, ଗ୍ରହଣ କରନ୍ତୁ ।

## ଗୀତ

ଅହେ ନୂଆ ଯୋଗୀମଣି !
ସତୀ ହସ୍ତେ ପରି ଭିକ୍ଷା ମାଗୁଣି ହେ ।
କିଶୋରମୁନି !
ଦଣ୍ଡକମଣ୍ଡଳୁ ପାଣି ହେ, କିଶୋରମୁନି ! । ୧ ।
ହସ୍ତେ ଭିକ୍ଷାଥାଳୀ ଧରି ।
ଠିଆ ହୋଇଛନ୍ତି ଆମ୍ଭ କିଶୋରୀ ହେ ।
ଭଜନକାରି !
ନିଅ ସୁକଲ୍ୟାଣ କରି ହେ, ଭଜନକାରି ! । ୨ ।
ମନବାଞ୍ଛା ପୂର୍ଣ୍ଣକର ।
(ଯଦି) ରାଧା ହସ୍ତ ଭିକ୍ଷା ଇଚ୍ଛା ତୁମ୍ଭର ହେ ।
ସନ୍ନ୍ୟାସୀବର !
ହସ କର୍ପା କର କର ହେ, ସନ୍ନ୍ୟାସୀବର ! । ୩ ।

ଯୋଗୀ—( ଅଡ଼ ନୟନେ ଶ୍ରୀରାଧାଙ୍କୁ ଗୃହିଁ ଥନ ଥନ ନେନେ )

## ଗୀତ

ଏ ଭିକ୍ଷାରେ ମୋର,                    ନାହିଁ ଦରକାର,
ତବ ଦରଶନେ ଇଚ୍ଛା ।
ନନ୍ଦସୁତେ ଅଛୁ,                    ଯେଉଁ ମହା ମାନ,
ଛାଡ଼ ଫୁଲ୍ଲ ମନ ବାଞ୍ଛା ।
( ସତୀ ଅଗ୍ରଣୀ ଗୋ ! ) ବୃନ୍ଦାବନ ବିହାରଣୀ;
( ସତୀ ଅଗ୍ରଣୀ ଗୋ ! ) ପତିବ୍ରତା ଶିରୋମଣି;
( ସତୀ ଅଗ୍ରଣୀ ଗୋ ! ) କୃଷ୍ଣ ପ୍ରେମ ତରଙ୍ଗିଣୀ । ୧ ।
ନିଷ୍ଠୁର ହେଉଛୁ,                    ଅପ୍ରେମକୁ ଦିଅ,
ଅଗୋ ଭକ୍ତ ବିନୋଦିନୀ !
ଯୋଗ ସିଦ୍ଧ ହେଉ,                    ଦିଅ ମାନ ଭିକ୍ଷା,
ଜଗତ ଜନ-ବନ୍ଦିନୀ !
( ନୃତ୍ୟ ବିଳାସିନୀ ଗୋ ! ) କୃଷ୍ଣପ୍ରୀତି ସୌଭାଗିନୀ;
( ନୃତ୍ୟ ବିଳାସିନୀ ଗୋ ! ) ସତୀକୁଳର ଅଗ୍ରଣୀ;
( ନୃତ୍ୟ ବିଳାସିନୀ ଗୋ ! ) ନିକୁଞ୍ଜ ଅଭିସାରଣୀ । ୨ ।

ଲଳିତା—ଯୋଗୀବର ! ଆମ ରାଧାଙ୍କୁ ତ ଏ ଗୋପରେ ଲୋକେ କୃଷ୍ଣ କଳଙ୍କିନୀ ବୋଲି କହୁଛନ୍ତି, ଅଉ ପତିବ୍ରତା ଶିରୋମଣି କିପରି ହେବେ ?

ଯୋଗୀ—ନା, ନା, ଶ୍ରୀରାଧା ବ୍ରଜମଣ୍ଡଳରେ ସତୀ, ସାଧ୍ୱୀ, ପତିବ୍ରତା; ଏ କଥା ତ୍ରିଭୁବନରେ ବିଖ୍ୟାତ । ମୋତେ ଚଞ୍ଚଳ ମାନ-

ଭିକ୍ଷା ଦାନ କରାଅ । (ଶ୍ରୀରାଧାଙ୍କ ପ୍ରତି) ଭାଗ୍ୟବତୀ ରାଧେ ! ଦିଅ, ଦିଅ, ତୁମ୍ଭ ପୁଣ୍ୟମୟ କର କମଳରେ ଧରିଥିବା ମେସ୍ଥାନ ପ୍ରତିବଦାଳରେ ଶ୍ରୀନନ୍ଦନନ୍ଦନ ବୃନ୍ଦାବନଚନ୍ଦ୍ରଙ୍କ ପ୍ରତି ଯେଉଁ ଗାଢ଼ ମାନ କରିଛ ତାହା ଏ ଯୋଗୀଙ୍କି ଦାନ କର ।

ଶ୍ରୀରାଧା—( ଅବନତ ବଦନେ ରହି ଭାଳିବା ଅଭିନୟ )

ଲଳିତା—ରାଧେ ! ଆଜି ଭାଳିହେଲେ କଅଣ ହେବ ? ଯୋଗୀ ତ ନିଷ୍ଟିୟ ଭିକ୍ଷା ନେବେ, ମାନ ଛଡ଼ା ତ ସେ ଅନ୍ୟ ଭିକ୍ଷା ଛୁଇଁବେ ନାହିଁ । ଯଦି ଭିକ୍ଷା ନ ନେଇ ଯୋଗୀ ଫେରିଯିବେ, ତେବେ ତ ତମର ଧର୍ମହାନି ହେବ, ଏବେ ଚଞ୍ଚଳ ମାନ-ଧନକୁ ଭିକ୍ଷା ଦିଅ ।

ଶ୍ରୀରାଧା—( ସଖୀମାନଙ୍କୁ ଚାହିଁ ) ସଖି ! କି ଉପାୟ କରିବି ?

ବିଶାଖା—( ମନ୍ଦହାସରେ ) ଅନ୍ୟ ଏଥିକି ଉପାୟ କଅଣ ଖୋଜୁଚ ? ରାଧେ ! ମାନ ଭିକ୍ଷା ଦେଲି ବୋଲି କହ । କଥା ଅଛି ପରା—"ତୁରନ୍ତ ଦାନ, ମହାପୁଣ୍ୟ"

ଶ୍ରୀରାଧା—ହଁ ସଖି ! ଯୋଗୀବରଙ୍କୁ ମାନ-ଭିକ୍ଷା ଦେଲି ।

ଲଳିତା—( ଯୋଗୀଙ୍କ ପ୍ରତି ) ଯୋଗୀବର ! ରାଧା ଆମର ଶ୍ରୀକୃଷ୍ଣଙ୍କଠାରେ ଯେଉଁ ମାନ କରିଥିଲେ, ତାହା ଆପଣଙ୍କୁ ଆଜି ଭିକ୍ଷାରୂପେ ଦାନ କଲେ, ଆଶୀର୍ବାଦ କରନ୍ତୁ ।

ଯୋଗୀ—( ହସ୍ତତୋଳି ) ମୁଁ ଆଶୀର୍ବାଦ କରୁଛି, ଏହି ପତିବ୍ରତା
ନାମ ଯୁଗେ ଯୁଗେ ଥାଉ ।

( ଶ୍ରୀରାଧାଙ୍କ ଅଡ଼କୁ ବାଙ୍କନୟନ ଚାହିଁ ଧୀରେ ଧୀରେ ପ୍ରସ୍ଥାନ )

ଶ୍ରୀରାଧା—( ଯୋଗୀଙ୍କି ଅଡ଼ନୟନେ ଚାହିଁ ସଖୀ ପ୍ରତି ) ସଖି ଗୋ !
ମୋ ପ୍ରାଣ ପ୍ରିୟତମାଙ୍କୁ ସତେ କି ନାରୀଗୀର କରାଇଲି ?
ଅହା !

## ଗୀତ

ଅଳି ! ମୁଁ ସତେ କି କଲି !
ଢାଳିଦେଲି ଯା ବାଲିରେ ପୀୟୂଷ ଥାଳି । ଘୋଷା ।
କାଳିନ୍ଦୀ ଗମ୍ଭୀର ଜଳେ,          ଭ୍ରାନ୍ତି ନ ହୋଇ ଛଳେ,
କାଳିଆ ମଣି ମାଳିକା ଫିଙ୍ଗିଲି । ୧ ।
ବଳା ସନ୍ତାପ ତାତ,          ଜଳି ଯାଉଛି ଗାତ୍ର,
ଲଳିତ ମୂର୍ତ୍ତିଙ୍କି ଯା ବେଷ ବଦଳି । ୨ ।
ତଳପା ଧରି ମୋର,          ନଳିନ-ନେତ୍ର ନୀର,
ଗାଳି କଲେ ଯା ଅଳି ତା ନ ଦେଖିଲି । ୩ ।

ଲଳିତା – ଧନମାଳି ! ଅଉ ସନ୍ତାପ କରନାହିଁ, ତୋ ଦୁର୍ଦ୍ଦଶା ଶେଷ
ହେଲାଣି ।

ବିଶାଖା—ରାଧେ ! ଏହି ସିନା କଳହାନ୍ତରିତା ଲକ୍ଷଣ । ସଖି ଗୋ !
ସ୍ଥିର ହୁଅ, ନିକଟରେ ପ୍ରାଣବନ୍ଧୁଙ୍କ ଦର୍ଶନ ପାଇବ ।

ଶ୍ରୀରାଧା—ସଖି ! ମୋ ଜୀବନ ସର୍ବସ୍ୱ କୃଷ୍ଣ ତ ମୃଦୁଆଡେ ଚାଲି-
ଯାଉଛନ୍ତି । ହାୟ ! ସେହି ନବନଟବର ବିରହ
ଛବିଟିକୁ ଅଣିଦିଅ । ସଖି ଗୋ ! ମୋର ତ ସେହି ନୀଳ
ମୂରତିଟି ପାଶୋର ହେଉନାହାନ୍ତି । ଅହା ! ଏ ଭେଲକି-
ମନ୍ତ୍ର ପୁଣି ମୋତେ କିଏ ଲଗେଇଦେଲା ? ସେଇ ଚନ୍ଦ୍ର-
ବଦନ ତ ମନେ ପଡୁଛନ୍ତି !

## ଗୀତ

ମନେ ପଡୁଛି ମା ! ସେହି ଚନ୍ଦ୍ରମୁଖ ।
ପାଶୋରିବା ପାଇଁ କେତେ ହେଲେହେଁ ବିମୁଖ । ଘୋଷା ।
କୁଟିଳ ଅଳକାବଳୀ, ଗଣ୍ଡମଣ୍ଡଳର ଝଳି, ମା !
ନାସାପୃଷ୍ଠର ଦ୍ୱିରଦ ମୁକୁତା ମୟୂଖ । ୧ ।
ଶୋଭି ବକ୍ର କୁଣ୍ଡଳର, ବଂଶୀ ବିନ୍ୟାସ ଅଧର, ମା !
ନୂଆ ବରିହ ମକୁଟ ଦରଶନ ସୁଖ । ୨ ।
ଶୁଣ ସର୍ବ ସହଚରୀ, କର କରୁଣା ମଞ୍ଜରୀ, ମା !
( ଏ ) ହତଭାଗିନୀ ରାଧାର ଯିବା ଜୀବ ରଖ । ୩ ।

ବିଶାଖା—ହୁଁ, ମୁଁ ଜାଣିଲି ଯେ, ପ୍ରେମିକ ଯୋଗୀ ବୋଧହୁଏ
ମୋହିନୀ ମନ୍ତ୍ର ଧୂଳି ପକେଇଦେଇ ଯିବାରୁ ତମର ଏ
ଅବସ୍ଥା; ନୁହେଁ ରାଧେ ?

ଲଳିତା—ଅଗୋ, ସତ ଗୋ, ସତ !

ଶ୍ରୀରାଧା—ଲଳିତେ ! ସେ ଯୋଗୀ କଅଣ ମନ୍ତ୍ରତନ୍ତ୍ର ଜାଣନ୍ତି ? ନଇଲେ ମୋ ପ୍ରାଣ ପ୍ରତିମା କୃଷ୍ଣଙ୍କୁ ଦେଖିବାକୁ ମୁଁ ଏପରି ପାଗଳିନୀ ହୁଅନ୍ତି କିଆଁ ? ସଖି ! ମୁଁ ତ ତାଙ୍କୁ ଅଜ କେବେ ଦେଖିଲାପରି ମନେ ହେଉଛି ।

ଲଳିତା—ତାଙ୍କର ତ ଏ ବ୍ରଜରେ ଅସ୍ଥାନ, ଦେଖି ନ ଥିବ କାହିଁକି ମ ?

ବିଶାଖା—କେତେଥର ତ ବାଟରେ, ଘାଟରେ ଦେଖା ହୋଇଛି, ଚିହ୍ନ ନ ଚିହ୍ନିଲାପରି ହେଉଥାଅ କାହିଁକି ମ ?

ରାଧା—ସଖି ! ସେ ଚିହ୍ନା ଖଣ୍ଡ ଯୋଗୀଟିଏ ମ !

ଲଳିତା—ଚନେ ! ନବରଙ୍ଗିଆ ଯୋଗୀଟିଏ ବୋଲି କହୁନାହିଁ ।

( ସଖୀଗଣ ମୁରୁକି ମୁରୁକି ହସିଲେ )

ଶ୍ରୀରାଧା—(ଉତ୍ସୁକମନେ) ସଖି ! ସତ କହ, ସେ କିଏ ?

ବିଶାଖା—ଆଉ କିଏ ? ସେ ସେହି କଳାକାହ୍ନୁ କମଳ-ଆଖି । ମୁଁ ତାଙ୍କ ଗୁହାଁରି ଛଟାରୁ ଜାଣି ପାରିଛି ।

ଶ୍ରୀରାଧା—( କରୁଣସ୍ୱରେ ) ଅହା ! ଘନ-ସୁନ୍ଦର ହେ ! ଏ ଛାର ଅଭାଗିନୀ ଲାଗି ଏପରି ଭିଖାରୀବେଶ ଧାରଣ କରି ଆସିଥିଲ ? ହାୟ ! ମୁଁ କି ଅବିଚାର କରିଥିଲି ! ( ସଖୀ ପ୍ରତି ) ସଖି ଗୋ ! ମୁଁ କେଡ଼େ ମନ୍ଦପଣ କଲି ? ଦାରୁଣ ମାନ କରି କାହିଁକି ତାଙ୍କୁ ଏତେ ଦୁଃଖ ଦିଆଇଲିଟି ?

## ଗୀତ

ସଖି ରେ ! ମୁଁ କି ହୁଡ଼ିଲି ?

ଦାରୁଣ ମାନକୁ ଭଜି, ଶ୍ୟାମବନ୍ଧୁଙ୍କୁ ଗଞ୍ଜିଲି ।

( ଘୋଷା )

ବସନ ପ୍ରସାରି ମୋତେ, ବନସ୍ତେ ଭ୍ରମିଲେ ଯେତେ,
ଚରଣତଳେ ପଡ଼ନ୍ତେ, ନ ଚାହିଁ ମୁଖ ମୋଡ଼ିଲି । ୧ ।

ଅନାଦର ଦେଖି ମୋର, ନୟନୁ ବୁହାଇ ନୀର,
ଚଳିଲେ ନାଗରବର, ଯାଇଁ ପଥ ନ ଅଡ଼ିଲି । ୨ ।

ଲଳିତା—ରାଧେ ! ଏ ବୃଥା ଅନୁତାପ ଛାଡ଼; ଆଜି ଏହି ଚଇତ୍ର-ପୂର୍ଣ୍ଣିମା ବାସନ୍ତୀ ରଜନୀରେ ବସନ୍ତ ବସନଙ୍କ ତୁଲେ ତୁମ୍ଭର ଶୁଭ ମିଳନ ହେବ । ଏବେ ଆସ, ସୂର୍ଯ୍ୟପୂଜା ବିଧାନ କରେଇବ ।

ବିଶାଖା—ସଖି ! ସୁଯୋଗକୁ ସୂର୍ଯ୍ୟ ପୂଜା ସମୟ ପ୍ରବେଶ ହେଲାଣି ।

ଶ୍ରୀରାଧା—ସଖି ! ଚାଲ, ପୂଜା ସମ୍ଭାର ନେଇ ସୂର୍ଯ୍ୟକୁଣ୍ଡକୁ ଯିବା ।

( ସମସ୍ତଙ୍କ ପ୍ରସ୍ଥାନ )

ଷଷ୍ଠ ପରିବର୍ତ୍ତନ



# ପଞ୍ଚମ ଅଙ୍କ

## ଦ୍ୱିତୀୟ ଦୃଶ୍ୟ

### ତମାଳ ବେଦୀକା

( ଶ୍ରୀକୃଷ୍ଣ ଯୋଗୀବେଶ ବଦଳାଇ ବୃନ୍ଦାଙ୍କ ସହିତ ପ୍ରବେଶ )

ବୃନ୍ଦା—ସୁନ୍ଦର ମୋହନ ! ମୋ କୌଶଳ ଦେଖିଲତ ? କପରି ବୁଦ୍ଧି-ବଳଦ୍ୟାରେ ରାଧାର ଦୁର୍ଜ୍ଜୟମାନକୁ ନିମିଷକ ମଧ୍ୟରେ ତୁଟେଇ ଦେଲି ?

ଶ୍ରୀକୃଷ୍ଣ—ହଁ ବୃନ୍ଦେ ! ତୁମ୍ଭର କୃପାରୁ ମାନମୟୀର ଗାଢ଼ମାନ ଦୂର-ହେଲା ।

ବୃନ୍ଦା—ଏବେ ମୋତେ କଣ୍ଟ ପୁରସ୍କାର ଦିଅ ।

ଶ୍ରୀକୃଷ୍ଣ—କି ପୁରସ୍କାର ଦେବ ବୃନ୍ଦେ ?

( ନିଜଗଳାରୁ ଫୁଲମାଳା ବାହାର କରି ହସି ହସି ବୃନ୍ଦାଙ୍କ ଗଳାରେ ପିନ୍ଧାଇଦେଲେ )

ବୃନ୍ଦା—ଏହି ଏକା ମୋର ପରମ ସୌଭାଗ୍ୟ, ପ୍ରଭୁ ! ଏହି କୃପା ସବୁଦିନେ ଥାଉ ।

( ହସି ହସି ସଙ୍କେତ ରହି କହିଲେ )

#### ଗୀତ

ଏ ଶ୍ରୀଅଙ୍ଗ ଛଡ଼ା ମାଳ ପାଇଁ ସିନା ।
ଖଟିଛି, ଦାସୀପଣେ ଅଧୀନା । ଘୋଷା ।

ହେ ନୀଳକାନ୍ତ !,                    ଏହ୍ନ ସୁଦନ୍ତ,
ଥାଜ ସବୁବନେ ମୋ କାଳଅ ସୁନା । ୧ ।

ସଖୀଗଣ—( ନେପଥ୍ୟେ ହୁଳହୁଳି ଧ୍ୱନି )

ବୃନ୍ଦା—ନାଗର ! ରାଇ କଣେଶ୍ୱରି ତୁମ୍ଭ ଦର୍ଶନଆଶାରେ ତୁମ୍ଭ ପୂଜିବାକୁ ଅସୁଚ । ତୁମ୍ଭେ ଏହ୍ନ ତମାଳ ବେଦୀ ନିକଟ ଅଶୋକ ମୂଳେ ତ୍ରିଭଙ୍ଗୀ ଠାଣିରେ ଉଭା ହୁଅ ଯା, ମୁଁ ମଧୁପାନର ଯୋଗାଡ଼ କରେଁ ।

ଶ୍ରୀକୃଷ୍ଣ—ହେଉ ତେବେ ।

( ଦୁଇ ବାଗରେ ଦୁହେଁ ପ୍ରସ୍ଥାନ )



( ସଖୀଗଣ ଶ୍ରୀରାଧାଙ୍କୁ ନେଇ ପ୍ରବେଶ )

## ଗୀତ

ଦେଖ ଦେଖ ସଜନି ! କିଏ ତମାଳ ମୂଳେ ? ( ଏ କିଏ ) ।
ମନ୍ଦେ ମନ୍ଦେ ହସି ଏଣେ ଡୋଳା ତ ଢାଳେ । ଘୋଷା ।
ଶିଖୀଚୂଳେ ଖୋସିଅଛୁ ରଙ୍ଗ ଜାମ୍ବୁ ଡାଳେ ।
ଅଧରେ ମୋହନବଂଶୀ ବଜାଇଲା ଗୁଳେ । ୧ ।
ଗଣ୍ଡ ମଣ୍ଡଳେ ରତନ କୁଣ୍ଡଳ ଗୋ ଖେଳେ ।
ଚନ୍ଦନ-ଚର୍ଚ୍ଚିତ ଶୋଭିତ ବନମାଳେ । ୨ ।

ରୁଣୁ ଝୁଣୁ ନୂପୁରକୁ ବାଇ ତାଳେ ତାଳେ ।
ଲଟ ଲଟ ଅପୁଅଛୁ ଏ ଲତା ଗହଳେ । ୩ ।

ପ୍ରେମଯୋଗୀ ହୋଇଥିଲେ ଯେ ଗୋ ! ମାନ ଛଳେ ।
ସେହୁ ରାଧା ପ୍ରାଣବନ୍ଧୁ ଦେଖ ବେନି ଡୋଳେ । ୪ ।

କି ସୁନ୍ଦର ଦିଶେ ଅଙ୍ଗ ଝୋପି ଝୋପି ହାଲେ ।
ଏ ରୂପକୁ ସଖି ! ଯାଉଥିବା କାଳେ କାଳେ । ୫ ।

( ଶ୍ରୀକୃଷ୍ଣ ମନ୍ଦହାସରେ ପ୍ରବେଶ )

## ଗୀତ

ଶ୍ରୀକୃଷ୍ଣ—ଯୋଗୀ ହୋଇଲି ବାଲିକେ ! ତୋ ଲାଗି,
ଶ୍ରୀରାଧା—ଏ କଳଙ୍କିନୀ ତୁମ୍ଭ ଅନୁରାଗୀ ।

ଶ୍ରୀକୃଷ୍ଣ—ଗୋଲୋକ ଛାଡ଼ିଲି ରାଧେ ! ତୋ ପାଇଁ,
ଶ୍ରୀରାଧା—ତୁମ୍ଭ ଲାଗି ଯାଏଁ ଯମୁନା ନଈ ହେ ।

ଶ୍ରୀକୃଷ୍ଣ—ତୋର ଲାଗି ନନ୍ଦ ବାଧାଟି,
ଶ୍ରୀରାଧା—ତୁମ୍ଭ ଲାଗି ଅଭିମାନିନୀ ରାଧାର
　　ନୀଳ ଶାଢ଼ୀରେ ଶରଧାଟି । ୧ ।

ଶ୍ରୀକୃଷ୍ଣ—ତୋତେ ଚାହିଁ ହେଲା ବଙ୍କା ନୟନ,
ଶ୍ରୀରାଧା—ଜଗତେ ଦେଖଇ ତୁମ୍ଭ ବଦନ ।

ସଖୀଗଣ—କୋହ୍ନଲେ କି ମନ ଦୁଃଅନ୍ତା ଛନ୍ତ ?

କୂଳମାନ ତେଜି ହୋଇ ଉଛୁଳ ଗୋ ?

( ରାଧେ ) ବନ୍ଧୁଁ ହୃଦେ ମହାମାନ ଗୋ ।

ଭୁବନ ମୋହନ ପୀନ ସ୍ତନ ବେଶେ

କରୁଥାନ୍ତେ କି ବେଦନ ଗୋ । ୨ ।

ଅସ ହେ ଗୋକୁଳ ପୂର୍ଣ୍ଣିମାଶଶି !

ଅସ ଗୋ କନକ-କାନ୍ତି ସୁହାସି !

ଅସ ବୃନ୍ଦାବନ ପ୍ରେମ ଦମ୍ପତି ।

ଅସ ଅସ ଅମ୍ଭ ନେତ୍ର ସମ୍ପତି ହେ !

ବସ ଏ ଫୁଲ ଦୋଳାରେଟି ।

ନାଶ ଅମ୍ଭ ମନୁଁ ଶର ଦୁଃଖଯାକ,

ରାସ ନିକୁଞ୍ଜ କେଳିରେଟି । ୩ ।

ଲଳିତା—( ଶ୍ରୀରାଧାଙ୍କ ପ୍ରତି ) ଅସ ଗୋ ରାଧେ ! ଏ ଲାଜ କାହିଁକି ?

ବିଶାଖା—( ଶ୍ରୀକୃଷ୍ଣ କିଶୋରୀ ଦୁହିଁଙ୍କ ଘେନି ପ୍ରସ୍ଥାନ )

ସଖୀଗଣ—( ପ୍ରେମ ବିହ୍ୱଳ ମନେ ଢ଼ୁଲଢ଼ୁଲ ହୋଇ ପ୍ରସ୍ଥାନ )

ପଟ ପରିବର୍ତ୍ତନ



# ପଞ୍ଚମ ଅଙ୍କ

## ଚତୁର୍ଥ ଦୃଶ୍ୟ

### କୁସୁମ ଦୋଳ

( ହସି ହସି ଶ୍ରୀରାଧାଗୋବିନ୍ଦ ଝୁଲିବା ଅଭିନୟ )

ସଖୀଗଣ—( ଆନନ୍ଦରେ ହସି ହସି )

### ଗୀତ

ଝୁଲଅ ଗୋ ! କିଶୋରୀ କାହ୍ନା ।
କିଶୋର କିଶୋରୀ ବୋଲି କୁଞ୍ଜେ ଜଡ଼ୁ ବାନା । ଘୋଷା ।
ଶ୍ୟାମ ଇନ୍ଦ୍ର ନୀଳମଣି,　　ଏ କିଶୋରୀ ସୁନା,
ଯୁଗଳ ରୂପକୁ ସଖି, କି ଦେବା ତୁଳନା । ୧ ।
ଆରମ୍ଭ ଗୋ ନୃତ୍ୟ ଗୀତ,　　ହୋଇ ତୋଷମନା,
ନାଚ ଉଠୁ ବୃନ୍ଦାବନ, ନାଚୁ ଗୋ ଯମୁନା । ୨ ।
ମଙ୍ଗଳ ସଙ୍ଗୀତ ଗାଅ,　　ସକଳ ସୁମନା,
ଜୟ ଶ୍ରୀରାଧିକେ ଜୟ ଗୋପ କଳାସୁନା, । ୩ ।
ଅହା କେଡ଼େ ସୁନ୍ଦର ଏ　　ଯୁଗଳ ପ୍ରତିମା
ଏତେଦିନେ ପୂରିଲା ଗୋ ଅମ୍ଭର କାମନା । ୪ ।



## କୀର୍ତ୍ତନ

ରାଧେ ଗୋବିନ୍ଦ ଜୟ ରାଧେ ରାଧେ !
(ଜୟ) ରାଧେ ଗୋବିନ୍ଦ ଜୟ ରାଧେ ରାଧେ ! !
(ଜୟ) ରାଧେ ଗୋବିନ୍ଦ ଜୟ ରାଧେ ରାଧେ ! ! !
ହରିବୋଲ ! ହରିବୋଲ ! ! ହରିବୋଲ ! ! !

( ଫୁଲ ଦୋଳିରେ ଯୁଗଳମୂର୍ତ୍ତି ଝୁଲୁଥିବା,
ସଖୀଗଣ ଜୟ ସଙ୍ଗୀତ ଗାଇ ଗାଇ
ନୃତ୍ୟ କରୁଥିବା )

## ଯ ବ ନି କା ପ ତ ନ

( ଇତି ଶ୍ରୀ ମାନଭଞ୍ଜନ ନାଟକ ସମ୍ପୂର୍ଣ୍ଣ )



କଟକ ଦତ୍ତପ୍ରେସରେ ଶ୍ରୀ ହରମୋହନ ଦତ୍ତଙ୍କ ଦ୍ୱାରା
ମେସିନଯନ୍ତ୍ରେ ମୁଦ୍ରିତ । ୧୯୩୨

ସମସ୍ତ ରାସଲୀଳା ନାଟକର ସୁଦକ୍ଷ ଲେଖକ ଓ ଶିକ୍ଷକ

କବିଚନ୍ଦ୍ର ଉପାଧିକ—ବ୍ରଜବାସୀ ବାବାଜୀ

**ଶ୍ରୀ ବୈଷ୍ଣବ ଚରଣ ଦାସଙ୍କ ପ୍ରଣୀତ**

# ରାସଲୀଳା ନାଟକାବଳୀ

ଯାହାକି ଭକ୍ତଙ୍କର ଘରେ ଘରେ ଚିର ଅଦୃତ, ପଠିତ ପ୍ରଶଂସିତ; ସେହି ସମସ୍ତ ରାସନାଟକାବଳୀ ପ୍ରକାଶିତ ହୋଇଅଛି। ନିମ୍ନରେ ସେମାନଙ୍କର ନାମ ଓ ମୂଲ୍ୟ ଦିଆଗଲା—

* ନୂତନ ରଙ୍ଗ ମଞ୍ଚ ଯୁକ୍ତ ନୂତନ ରାସନାଟକାବଳୀ *

## ବାଲ୍ୟଲୀଳା ନାଟକ ମୂଲ୍ୟ ଟ ୦ ୯

( ଶ୍ରୀକୃଷ୍ଣଙ୍କର ବାଲ୍ୟାବସ୍ଥାର କୌତୁକ ପୂର୍ଣ୍ଣ ଲୀଳାବଳୀ )

---

## ରାଧା ମାଧବ ନାଟକ ମୂଲ୍ୟ ଟ ୦ ୵

( ଶ୍ରୀ ଶ୍ରୀ ରାଧାକୃଷ୍ଣଙ୍କର ନୂତନ ମିଳନ )

---

## ଚନ୍ଦ୍ରାବଳୀ ବିଳାସ ନାଟକ ମୂଲ୍ୟ ଟ ୦ ୵

( ଚନ୍ଦ୍ରାବଳୀଙ୍କ ସହିତ ଶ୍ରୀକୃଷ୍ଣଙ୍କର ନିକୁଞ୍ଜ ବିଳାସ )

---

## ଶ୍ରୀ ଶ୍ରୀ ବୃନ୍ଦାବନ ଲୀଳାମୃତ ଟ ୦ ୯

( ଶ୍ରୀକୃଷ୍ଣଙ୍କ ପୌଗଣ୍ଡ ଲୀଳା ବା ନୌକା ବିହାର ଏବଂ କାଳୀୟ ଦଳନ )